ସ୍ମରଣିକା

# ଗୁପ୍ତେଶ୍ୱର



ନିଖିଳ ଉତ୍କଳ ଲେଖକ ସମ୍ମିଳନୀ
ଜୟପୁର ଅଧିବେଶନ
୧୯୯୩

# ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥା

## ଜୟପୁର

[illegible]

ଏହି ସଂସ୍ଥା ୧.୧.୧୯୭୬ ଠାରୁ ଆଇ.ଟି.ଡି.ପି. ଏବଂ ୧୫.୩.୧୯୭୯ ଠାରୁ ଆଇ.ଟି.ଡି.ଏ. ହୋଇ କାର୍ଯ୍ୟ ସଂପାଦନ କରି ଆସୁଥିଛି ।

**ସଂପାଦିତ କାର୍ଯ୍ୟାବଳୀର କେତେକ ସୂଚନା :—**

| | | | |
|---|---|---|---|
| ୧. | ଦାରିଦ୍ର୍ୟ ଦୂରିକରଣ କାର୍ଯ୍ୟକ୍ରମରେ ଉପକୃତ ହୋଇଥିବା ଉପଭୋକ୍ତା : | ଆଦିବାସୀ | ୧୪,୦୦୨ |
| | | ହରିଜନ | ୨,୦୭୩ |
| | | ଆର୍ଥିକ ଦୁର୍ବଳ ଓ ଅନ୍ୟାନ୍ୟ | ୨,୫୩୧ |
| ୨. | କୃଷି ଏବଂ ଫଳ ପ୍ରଦର୍ଶନ କ୍ଷେତ୍ରରେ ଉପକୃତ ଉପଭୋକ୍ତା | ଆଦିବାସୀ | ୧୪,୧୮୦ |
| ୩. | ସରକାରୀ ଜମିରେ ରୋପିତ କାଜୁ ଗଛର ଫଳଭୋଗ କରୁଥିବା ଉପଭୋକ୍ତା | ଆଦିବାସୀ | ୧,୧୯୦ (୨୧୩୦ ଏକର) |
| ୪. | ସଂପାଦିତ ଜଳ ଅମଳ ପ୍ରକଳ୍ପ | | ୪୬ |
| | କାର୍ଯ୍ୟ ସଂପାଦିତ ହୋଇଥିବା ପ୍ରକଳ୍ପ | | ୬୨ |
| ୫. | ଉଠା ଜଳସେଚନ ପ୍ରକଳ୍ପ | | ୪ |
| ୬. | ନୂତନ ସେବାଶ୍ରମ ଗୃହ ନିର୍ମାଣ | | ୬ |
| ୭. | ନିର୍ମିତ ଅତିରିକ୍ତ ଶ୍ରେଣୀ ଗୃହ | | ୩୯ |
| ୮. | ପ୍ରାଥମିକ ବିଦ୍ୟାଳୟଗୁଡ଼ିକରେ ନିର୍ମିତ ଛାତ୍ରାବାସ | | ୭୮ |
| ୯. | ନିର୍ମିତ ଆଶ୍ରମ ବିଦ୍ୟାଳୟ ଓ ଛାତ୍ରାବାସ | | ୩ |
| ୧୦. | ଆଦିବାସୀ ବସ୍ତିରେ ପାନୀୟ ଜଳ ନିମନ୍ତେ କୂପ | | ୧୧୨ |
| ୧୧. | ଗମନାଗମନ ନିମନ୍ତେ ରାସ୍ତା ନିର୍ମାଣ ଓ ମରାମତି | | ୨୩୫ |
| ୧୨. | ନଦୀ ଘାଟରେ ଡଂଗା ଯୋଗାଣ | | ୨୦ |
| ୧୩. | ଆଦିବାସୀ ବସ୍ତିରେ ବିଦ୍ୟୁତ୍ ଯୋଗାଣ | | ୭ |
| ୧୪. | ସମନ୍ୱିତ ବିକାଶ ନିମନ୍ତେ ଆଦର୍ଶ ଗ୍ରାମ | | ୬ |
| ୧୫. | କର୍ମଚାରୀଙ୍କ ନିମନ୍ତେ ନିର୍ମିତ ବାସଗୃହ | | ୩୨ |

**ଶ୍ରୀକାନ୍ତ ପଟ୍ଟନାୟକ, ଓ.ଏ.ଏସ୍(I)**
ପରିଯୋଜନା ପ୍ରଶାସକ
ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥା
ଜୟପୁର

**ଜଗଦୀଶ ପ୍ରସାଦ ଦାଶ,** ଆଇ.ଏ.ଏସ୍
ଜିଲ୍ଲାପାଳ, କୋରାପୁଟ ତଥା
ଅଧ୍ୟକ୍ଷ ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥା
ଜୟପୁର

ସ୍ମରଣିକା

# • ଗୁପ୍ତେଶ୍ୱର •

## ନିଖିଳ ଉତ୍କଳ ଲେଖକ ସମ୍ମିଳନୀ
ଜୟପୁର ଅଧିବେଶନ
୧୯୯୩

ସଂପାଦନା ମଣ୍ଡଳି

ଶ୍ରୀ ନରସିଂହ ମିଶ୍ର
ଶ୍ରୀ କାଳୀକିଙ୍କର ମିଶ୍ର
ଶ୍ରୀ ଶିବରାମ ପାତ୍ର
ଶ୍ରୀ ନଳିନୀ ରଞ୍ଜନ ମିଶ୍ର
ଶ୍ରୀ ଶ୍ରୀନାଥ ମିଶ୍ର
ଡଃ କିଶୋର ଚନ୍ଦ୍ର ଦାସ
ଶ୍ରୀ ଶରତ କୁମାର ମହାନ୍ତି

*ମୁଦ୍ରଣ:*
ଅମିତ୍ ପଣ୍ଡା
ପରଫେକ୍ଟ ଅଫ୍‌ସେଟ୍ ପ୍ରିଣ୍ଟର୍ସ
ମେନ୍ ରୋଡ଼, ଜୟପୁର - ୭୬୪ ୦୦୧

*ପ୍ରଚ୍ଛଦଚିତ୍ର :*
ପ୍ରାଚୀନ ଜୟପୁର ରାଜ୍ୟର
ଐତିହାସିକ ରାଜଧାନୀ ନନ୍ଦପୁରଠାରେ
ଅବସ୍ଥିତ ବତ୍ରିଶ ସିଂହାସନ ।।
(ଫଟୋଚିତ୍ର - କୃଷ୍ଣ ଚନ୍ଦ୍ର ନିଶଙ୍କ)

*ମୂଲ୍ୟ :*
*ଟ. ୨୦/- (କୋଡ଼ିଏ ଟଙ୍କା)*



ଗୁପ୍ତେଶ୍ୱର - ଗୁମ୍ଫାସ୍ଥିତ **ପ୍ରସିଦ୍ଧ** ଶିବଲିଙ୍ଗ



କାମତାରୁ ପ୍ରାପ୍ତ ଜୈନମୂର୍ତ୍ତି
ଜୟପୁର ସଂଗ୍ରହାଳୟ





**B. Satyanarayan Reddy**
GOVERNOR, ORISSA



RAJ BHAVAN
BHUBANESWAR - 751 008
December 9,1993

# MESSAGE

I am glad to learn that the All Orissa Writers' Conference is being organised jointly by the Koraput District Administration and the Orissa Sahitya Academy from December 17th to 19th, 1993 at Jeypore, Koraput.

Literature reflects society's mores and values. Oriya literature has a rich and glorious tradition. From times immemorial, our State has been blessed with prolific and erudite literateurs. They have produced great works of poetry, Drama, fiction, criticism as well as other forms of literature. It is of paramount importance to nurture this precious literary tradition.

This Writers' Conference, I am sure, will make earnest endeavours to encourage gifted writers and literateurs who are meeting at Jeypore.

I send my good wishes for the success of the Conference.

B. Satyanarayan Reddy

**(B. SATYANARAYAN REDDY)**



**BIJU PATNAIK**
**CHIEF MINISTER**



ORISSA STATE

BHUBANESWAR
Date 8.12.1993

# MESSAGE

*I am happy to know that All Orissa Writers' Conference is being organised at Jeypore, Koraput in collaboration with the Orissa Sahitya Academy from 17th to 19th December 1993. It is also heartening to know that the occasion will be marked by Seminars, Book Fair, Exhibition, Kabi Sammelan and Cultural Festival in which eminent Writers, Artists and Publishers are taking part.*

*Literature nourishes and enriches society. At a time when the written word is being threatened by the electronic invasion, there is great need for artists, writers, publishers and readers to meet and think of ways to make literature popular. I am sure this conference would Provide such an occasion.*

*I wish the celebrations all success.*

**Sd/-**
**(Biju Patnaik)**



**ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବକ୍ସିପାତ୍ର**
ବାଣିଜ୍ୟ ଏବଂ ପରିବହନ ମନ୍ତ୍ରୀ
ଓଡ଼ିଶା ସରକାର

# ବାର୍ତ୍ତା

ନୈସର୍ଗିକ ଶୋଭାଶ୍ରୀ ପରିପୂର୍ଣ୍ଣ କୋରାପୁଟରେ ସଂସ୍କୃତି ଓ ସାହିତ୍ୟର ବାର୍ତ୍ତାବହ ଭାବରେ ଏକ ସ୍ମରଣିକା ପ୍ରକାଶିତ ହେଉଥିବାରୁ ମୁଁ ଆନନ୍ଦିତ। ଆଶା ଓ ବିଶ୍ୱାସ, ବିମଳ ସାହିତ୍ୟରସ ପିପାସୁ ବିଦଗ୍ଧ ଗ୍ରାହକମାନଙ୍କ ନିକଟରେ ତାହା ଆଦୃତ ହେବ। ଅବିଭକ୍ତ କୋରାପୁଟ ଜିଲ୍ଲାର ସଂସ୍କୃତି ସଂପର୍କରେ ଏ ଯାବତ ଅନାଲୋଚିତ ବହୁ ତଥ୍ୟ ଏବଂ ଗବେଷଣା ଧର୍ମୀ ନିବନ୍ଧ ଗୁଡ଼ିଏ ସ୍ମରଣିକାରେ ସ୍ଥାନିତ ହୋଇଅଛି - ଯାହାକି ସମଗ୍ର ଓଡ଼ିଶାର ସାଂସ୍କୃତିକ ସଂହତି ପାଇଁ ଯୋଗସୂତ୍ର ପ୍ରଚେଷ୍ଟା ଭାବରେ ଗ୍ରହଣ କରାଯାଇପାରେ।

ହରିଶ୍ଚନ୍ଦ୍ର ବକ୍ସିପାତ୍ର

# ଶୁଭେଚ୍ଛା

ପ୍ରାଚୀନ କାଳରୁ କୋରାପୁଟ ଜିଲ୍ଲାର ବିଭିନ୍ନ ଅଞ୍ଚଳ ସମଗ୍ର ଭାରତୀୟ ସଭ୍ୟତା ଓ ସଂସ୍କୃତିର ପୀଠଭୂମି ରୂପେ ପ୍ରତିଷ୍ଠା ଅର୍ଜନ କରି ଆସିଅଛି। କୋରାପୁଟରେ ଦଣ୍ଡକ ବନ ରାମାୟଣ ଯୁଗର ପ୍ରସିଦ୍ଧି ବହନ କରୁଅଛି। ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭରପୁର କୋରାପୁଟ ଯୁଗେ ଯୁଗେ ଓଡ଼ିଶାର ଧର୍ମ, ସଂସ୍କୃତି, କଳା ଓ ସାହିତ୍ୟକୁ ଋଦ୍ଧିମନ୍ତ କରି ଆସିଛି। କୋରାପୁଟରେ ଆଦିମ ଅଧିବାସୀମାନଙ୍କର ଅନନ୍ୟ ସାଂସ୍କୃତିକ ପରମ୍ପରା ଏବେ ମଧ ସମଗ୍ର ବିଶ୍ୱର ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରୁଅଛି। ଆଧୁନିକ ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିକୁ ମଧ କୋରାପୁଟର ଅବଦାନ କୌଣସି ଗୁଣରେ ଊଣା ନୁହେ। ବଲ୍ଲଭ ନାରାୟଣ ବେହେରା ମହାପାତ୍ର ପ୍ରଭୃତି ଊନବିଂଶ ଶତାବ୍ଦୀର ପୁରାଣକାର, ବିଂଶ ଶତାବ୍ଦୀର ପ୍ରଥମ ପାଦରେ ପ୍ରସିଦ୍ଧି ଲାଭ କରିଥିବା ବରିଷ୍ଠ କବି ମହାରାଜ ବିକ୍ରମ କେଶରୀ ବର୍ମା ଏବଂ ସମକାଳୀନ ଓଡ଼ିଆ ସାହିତ୍ୟର ବିଶିଷ୍ଟ କଥାକାର ଶ୍ରୀ ରାମନାଥ ପଣ୍ଡା ପ୍ରମୁଖ ଓଡ଼ିଆ ସାହିତ୍ୟର ଶ୍ରୀ ବୃଦ୍ଧି ସାଧନ କରି ଅଛନ୍ତି। ବାଲିମେଳା, ମାଛକୁଣ୍ଡ ଓ ଇନ୍ଦ୍ରାବତୀ ପ୍ରମୁଖ ପ୍ରକଳ୍ପଗୁଡ଼ିକ ଆଧୁନିକ ଓଡ଼ିଶାର ସମୃଦ୍ଧିସାଧନ କ୍ଷେତ୍ରରେ ବିଶେଷ ସହାୟକ ହୋଇଛି ଏବଂ ସୁନାବେଡ଼ାର ବିମାନ କାରଖାନା ସମଗ୍ର ଭାରତରେ ଓଡ଼ିଶାର ଗୌରବ ବୃଦ୍ଧି କରିପାରିଛି।

ପ୍ରକୃତିର ସ୍ୱର୍ଗ ସେହି କୋରାପୁଟ ଜିଲ୍ଲାର ଜୟପୁରଠାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପକ୍ଷରୁ ଆୟୋଜନ କରାଯାଉଥିବା ନିଖିଳ ଉତ୍କଳ ଲେଖକ ସମ୍ମିଳନୀ ଅବସରରେ ଏହି ସମ୍ମିଳନୀ ଅବସରରେ କୋରାପୁଟରେ ବିଦଗ୍ଧ ମଣ୍ଡଳୀ ତଥା ପ୍ରଶାସନ ପକ୍ଷରୁ ବିଶିଷ୍ଟ ଜନନେତା ଓଡ଼ିଶାର ମାନ୍ୟବର ପରିବହନ ମନ୍ତ୍ରୀଙ୍କ ଅଧକ୍ଷତାରେ ଗଠିତ ସ୍ୱାଗତ କମିଟି ପକ୍ଷରୁ ଏକ ସ୍ମରଣିକା ପ୍ରକାଶ କରାଯାଉଥିବା ଅତ୍ୟନ୍ତ ଆନନ୍ଦର କଥା। ଏହି ଅବସରରେ ମୁଁ କୋରାପୁଟ ଜିଲ୍ଲାରେ ଓଡ଼ିଆ ସାହିତ୍ୟ ସଂସ୍କୃତିର ଉତ୍ତରୋତ୍ତର ଉନ୍ନତି କାମନା କରୁଛି ଏବଂ ସମ୍ମିଳନୀର ସଫଳତା ପାଇଁ ସ୍ୱାଗତ କମିଟିର ଆନ୍ତରିକ ସାହାଯ୍ୟ ଓ ସହଯୋଗ ପାଇଁ କୃତଜ୍ଞତା ଜଣାଉଛି।

**ମନୋରମା ମହାପାତ୍ର**

ସଭାପତି, ଓଡ଼ିଶା ସାହିତ୍ୟ ଏକାଡେମୀ

ଭୁବନେଶ୍ୱର





**BHUBANESWAR - 751 008**
**Date 9.12.1993**

**SHRI BAIRAGI JENA**
**MINISTER**
**ORISSA STATE**
**Information & Public Relations**
**Orissa**

# ବାର୍ତ୍ତା

କୋରାପୁଟ ଜିଲ୍ଲାର ଜୟପୁର ଭଳି ସୀମାନ୍ତ ଅଞ୍ଚଳରେ ରାଜ୍ୟସ୍ତରୀୟ ଲେଖକ ସମ୍ମିଳନୀ ଆୟୋଜନ କରିବା ଏକ ବଳିଷ୍ଠ ପଦକ୍ଷେପ। ଚଳିତ ଡିସେମ୍ବର ୧୭ ତାରିଖଠାରୁ ୧୯ ତାରିଖ ପର୍ଯ୍ୟନ୍ତ ଆୟୋଜିତ ଏହି ସମ୍ମିଳନୀରେ ବିଭିନ୍ନ ସ୍ଥାନରୁ ଲେଖକ/ଲେଖିକା, ଆଲୋଚକ/ଆଲୋଚିକା ଏବଂ କବି କବୟିତ୍ରୀ ଯୋଗ ଦେଉଥିବା ଜାଣି ମୁଁ ବିଶେଷ ଆନନ୍ଦିତ। ଓଡ଼ିଆ ଭାଷା ସାହିତ୍ୟର ମୂଲ୍ୟାୟନ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ସଂସ୍କୃତର ସମୃଦ୍ଧି ଦିଗରେ ଏହି ସମ୍ମିଳନୀ ସହାୟକ ହେବ ବୋଲି ମୋର ଆଶା ଓ ବିଶ୍ୱାସ।

ସମ୍ମିଳନୀର ଉଦ୍ୟୋକ୍ତାମାନଙ୍କୁ ସାଧୁବାଦ ଜଣାଇବା ସଙ୍ଗେ ସଙ୍ଗେ ଏହାର ସଂପୂର୍ଣ୍ଣ ସଫଳତା କାମନା କରେ।

ବୈରାଗୀ ଜେନା



**ଶ୍ରୀ ଜୟରାମ ପାଙ୍ଗି**
**ଅବକାରୀ ରାଷ୍ଟ୍ର ମନ୍ତ୍ରୀ**
**ଓଡ଼ିଶା**



ଭୁବନେଶ୍ୱର
ତା - ୬-୧୨-୯୩

# ବାର୍ତ୍ତା

ନିଖିଳ ଉତ୍କଳ ଲେଖକ ସମ୍ମିଳନୀ, ୧୯୯୩ ଚଳିତ ମାସ ୧୭ ତାରିଖ ଠାରୁ ୧୯ ତାରିଖ ପର୍ଯ୍ୟନ୍ତ ଜୟପୁରଠାରେ ଅନୁଷ୍ଠିତ ହେଉଥିବା ଜାଣି ମୁଁ ବିଶେଷ ଆନନ୍ଦିତ ।

ଓଡ଼ିଆ ସାହିତ୍ୟକୁ ସମୃଦ୍ଧ ଓ ପ୍ରସାର କରିବା ନିମନ୍ତେ ସବୁ ସ୍ତରରେ ଏବଂ ସବୁ ପ୍ରାନ୍ତରରେ ସଦାସର୍ବଦା ନିଷ୍ଠାପର ଉଦ୍ୟମ କରାଯିବା ଆବଶ୍ୟକ । ଉକ୍ତ ସମ୍ମିଳନୀ ଜନ ସଚେତନତା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଐକ୍ୟ ପ୍ରତିଷ୍ଠା କରିବା ଦିଗରେ ସାହାଯ୍ୟ କରିବ । ଏହାହିଁ ମୋର ଆଶା ଓ ବିଶ୍ୱାସ ।

ପରିଶେଷରେ ମୁଁ ଏହି ସମ୍ମିଳନୀର ସଂପୂର୍ଣ୍ଣ ସଫଳତା କାମନା କରୁଛି ।

**ଜୟରାମ ପାଙ୍ଗି**



***ଶ୍ରୀ ଜଗଦ୍ଦୀଶ ପ୍ରସାଦ ଦାଶ*** *ଆଇ.ଏ.ଏସ୍*
***ଜିଲ୍ଲାପାଳ ଓ ଜିଲ୍ଲା ମାଜିଷ୍ଟ୍ରେଟ, କୋରାପୁଟ***

# ବାର୍ତ୍ତା

*ସୁମହତ ସଂସ୍କୃତି; ଶାଶ୍ୱତ ମୂଲ୍ୟବୋଧ ସଂପନ୍ନ ସାହିତ୍ୟ, ଉତ୍କର୍ଷ କଳା ପ୍ରପୂର୍ଣ୍ଣ ଉତ୍କଳର କବିକୁଳ ଏକତ୍ରିତ ହେଉଛନ୍ତି ଜୟପୁର ସହରରେ ଚଳିତ ମାସର ୧୭ରୁ ୧୯ ତାରିଖ ମଧ୍ୟରେ ଏକ ରାଜ୍ୟସ୍ତରୀୟ ସାରସ୍ୱତ ସମ୍ମେଳନୀରେ । ଏହି ଅପୂର୍ବ ସହନ ସଙ୍ଗମରେ ଭାବର ଆଦାନ ପ୍ରଦାନ, ସାଂସ୍କୃତିକ ଚେତନାର ପ୍ରସାରଣ ହେବ। ଏଇ ଅବସରରେ ଏକ ସମ୍ଭ୍ରାନ୍ତ, ସୁସ୍ଥ ସାରସ୍ୱତ ମୁଖପତ୍ର ଭାବରେ ସ୍ମରଣିକାଟିଏ ପ୍ରକାଶିତ ହେଉଛି। ଆଶା; ବିଦଗ୍ଧ ଗ୍ରାହକମାନେ ଏ ଅଞ୍ଚଳର ସଂସ୍କୃତି ଏବଂ ଆତ୍ମିକ ସୌନ୍ଦର୍ଯ୍ୟର ଲିଖିତ ସୂଚନା ସ୍ମରଣିକାଟିରୁ ପାଇବେ ଏବଂ ସାଦରେ ଗ୍ରହଣ କରିବାକୁ ଅନୁରୋଧ।*

**ଜଗଦ୍ଦୀଶ ପ୍ରସାଦ ଦାଶ**



**ଶ୍ରୀ ପତିତ ପାବନ ପଣ୍ଡା**
**ଉପଜିଲ୍ଲାପାଳ**

ଜୟପୁର
୧୫.୧୨.୯୩

# ବାର୍ତ୍ତା

*ସଂସାର ବିଷ ବୃକ୍ଷସ୍ୟ ଦ୍ୱୈବମଧୁରୈ ଫଳୈ*
*କାବ୍ୟାନନ୍ଦ ରସାସ୍ୱାଦ ସଙ୍ଗମ ସଜ୍ଜନୈସହ !!*

କାବ୍ୟାମୃତ ପାନ ଏବଂ ସଜ୍ଜନ ସଙ୍ଗମର ଏକ ଅପୂର୍ବ ସୁଯୋଗ ଚରିତାର୍ଥ ହେବ ଚଳିତ ମାସ ୧୭,୧୮,୧୯ ତାରିଖରେ ଜୟପୁରଠାରେ ଅନୁଷ୍ଠିତ ହେଉଥିବା ରାଜ୍ୟସ୍ତରୀୟ ସାରସ୍ୱତ ସମ୍ମିଳନୀରେ। ଏହା ଏକ ମହାନ୍ ଜ୍ଞାନ ଯଜ୍ଞତୁଲ୍ୟ। ଏଇ ଅବସରରେ ଏକ ସ୍ମରଣିକା ପ୍ରକାଶିତ ହେବ। ତାହା ସାଂସ୍କୃତିକ ଭାବ ବିନିମୟର ଏକ ବଳିଷ୍ଠ ମାଧମ। ଅବିଭକ୍ତ କୋରାପୁଟ ଜିଲ୍ଲା ଶତାବ୍ଦୀ ଶତାବ୍ଦୀର ଏକ ପ୍ରାଚୀନ ସଂସ୍କୃତିର ପୀଠ- ଯେଉଁଠି ଆର୍ଯ୍ୟ, ଅନାର୍ଯ୍ୟ, ଦ୍ରାବିଡ଼, ଆଦିବାସୀ ସଂପ୍ରଦାୟର କ୍ଷୀରନୀରବତ ମିଳନ ସାଧିତ ହୋଇଛି। ଏହା ବିଶ୍ୱ-ମାନବ-ସଂସ୍କୃତିର ଏକ ଅଂଶ। ଏହାକୁ ଚିହ୍ନି ଚିହ୍ନାଇବା, ଜାଣି ଜଣାଇବା ପାଇଁ ଲେଖକମାନେ ଯେଉଁ ସାଧୁ ଉଦ୍ୟମ କରିଛନ୍ତି; ଗବେଷଣାତ୍ମକ ରଚନା ମାଧମରେ ଯେଉଁ ପ୍ରାରମ୍ଭିକ ପଦକ୍ଷେପ ନେଇଛନ୍ତି ତାହାର ବାର୍ତ୍ତା ବହନ କରିଛି ସ୍ମରଣିକାଟି। ସମଗ୍ର ଓଡ଼ିଶାର ସାଂସ୍କୃତିକ ସମନ୍ୱୟ, ସଂହତି, ଭାଷା ଓ ଭାବର ମିଳନ ପାଇଁ ଏହା ଉଦ୍ଦିଷ୍ଟ। ଉତ୍କଳର ବିଦଗ୍ଧ ପାଠକେ ସ୍ମରଣିକାର ଅର୍ଘ୍ୟ ଘେନାଇଲେ ଶ୍ରମ ସାର୍ଥକ ହେବ।

ପତିତ ପାବନ ପଣ୍ଡା

## ନିବ୍ୟାଚିତେଷୁ

ଅବିଭକ୍ତ କୋରାପୁଟ ଜିଲ୍ଲା ହେଉଛି ଆଧୁନିକ ଓଡ଼ିଶାର ଏକ ନବୀନତମ ଅଂଶ। ୧୯୩୬ ମସିହାରେ ଆଧୁନିକ ଓଡ଼ିଶା ପ୍ରଦେଶ ଗଠିତ ହେବା ଯାଏ ଏହି ବିରାଟ ଅଞ୍ଚଳକୁ ଓଡ଼ିଶାର ବିଛିନ୍ନାଞ୍ଚଳ କୁହାଯାଉଥିଲା। ସେତେବେଳେ ଏହି ତଥାକଥିତ ବିଚ୍ଛିନ୍ନାଞ୍ଚଳର ଜନସାଧାରଣଙ୍କ ମନ ପ୍ରାଣରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଭାବଗତ ରସ ଆସ୍ୱାଦନ ପାଇଁ ଯେଉଁ ତୀବ୍ର ବ୍ୟାକୁଳତା ଓ ଆସ୍ପୃହା ଉଜ୍ଜୀବିତ ହୋଇ ରହିଥିଲା, ତାହା ଅନନ୍ୟ ସାଧାରଣ। ଏ ଜିଲ୍ଲାବାସୀ ଅନ୍ୟ ପ୍ରଦେଶର ବାସିନ୍ଦା ହୋଇ କଷ୍ଟ ଭୋଗ କରୁଥିଲେ ମଧ୍ୟ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ପ୍ରୀତିକୁ କେବେ ବି ଊଣା କରି ନଥିଲେ। କିନ୍ତୁ ଦୁଃଖ ହେଉଛି, ଏ ଅଞ୍ଚଳର ସେହି ସାହିତ୍ୟିକ ଓ ସାଂସ୍କୃତିକ ରସାସ୍ୱାଦନ ଇଚ୍ଛା ଏ ପର୍ଯ୍ୟନ୍ତ ପୂରଣ ହୋଇ ପାରିନାହିଁ।

ଏହି ପରିପ୍ରେକ୍ଷୀରେ ଏ ବର୍ଷ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଆନୁକୂଲ୍ୟରେ ଏ ଅଞ୍ଚଳର ମୁଖ୍ୟ ସହର ଜୟପୁରଠାରେ ନିଖିଳ ଉତ୍କଳ ଲେଖକ ସମ୍ମିଳନୀ ଅନୁଷ୍ଠିତ ହେଉଥିବା ଆନନ୍ଦର କଥା। ଅବଶ୍ୟ ସ୍ଥାନୀୟ ଅଧିବାସୀଙ୍କର ଉକ୍ତ ଆକାଂକ୍ଷା ଦୃଷ୍ଟିରୁ ଏହା ହେଉଛି ଓଡ଼ିଶା ସାହିତ୍ୟ ଏକାଡ଼େମୀ ଭଳି ଏକ ରାଜ୍ୟ ସ୍ତରୀୟ ଅନୁଷ୍ଠାନର ଗୋଟିଏ ବିଳମ୍ବିତ ପଦକ୍ଷେପ। ତଥାପି ଏ ପଦକ୍ଷେପ ଅତ୍ୟନ୍ତ ସ୍ୱାଗତ ଯୋଗ୍ୟ ଓ ଅଭିନନ୍ଦନୀୟ। ସେଥିପାଇଁ ଆମେ ଏକାଡ଼େମୀର କର୍ମ କର୍ତ୍ତାମାନଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛୁ।

ଆମେ ଆଶା କରିବା, ଏତେ ବିଳମ୍ବରେ ହେଲେ ବି ରାଜ୍ୟ ସ୍ତରର ଅନ୍ୟାନ୍ୟ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନମାନେ ଏଭଳି ପଦକ୍ଷେପ ଗ୍ରହଣ କରି ଜିଲ୍ଲାବାସୀଙ୍କ ଆଦିମ ଆକାଂକ୍ଷାକୁ ଚରିତାର୍ଥ କରାଇବେ।



ଭୈରବ ସିଂହପୁରରୁ ପ୍ରାପ୍ତ ଜୈନମୂର୍ତ୍ତି
ଜୟପୁର ସଂଗ୍ରହାଳୟ



ଭୈରବୀ ମୂର୍ତ୍ତି
ଜୟପୁର ସଂଗ୍ରହାଳୟ



ଚରାମୂଳାରୁ ପ୍ରାପ୍ତ ଜୈନମୂର୍ତ୍ତି
ଜୟପୁର ସଂଗ୍ରହାଳୟ



ଜୈନମୂର୍ତ୍ତି - ଜୟପୁର ସଂଗ୍ରହାଳୟ

# କୋରାପୁଟରେ ଜୈନ ପ୍ରଭାବ

ଶ୍ରୀ ଅନାଦି ସାହୁ

ଯକ୍ଷ ଶଚକ୍ରେ ଜନକ ତନୟା ସ୍ନାନ ପୂଣ୍ୟୋଦକେଷୁ
ସ୍ନିଗ୍ଧ ଛାୟା ତରୁଷୁ ବସତି ରାମଗିର୍ଯ୍ୟା-ଶ୍ରମେଷୁ।

ଏହା ଥିଲା ସାହିତ୍ୟ ପ୍ରେମୀମାନଙ୍କ ପାଇଁ କାଳିଦାସଂକର ସଶ୍ରଦ୍ଧ ଉପହାର ନିଜ 'ମେଘଦୂତମ୍' କାବ୍ୟ ମାଧ୍ୟମରେ।

ସେ ଆସିଥିଲେ ଗୁପ୍ତ ରାଜାଙ୍କ ଗହଣରେ ମହାକାନ୍ତାରକୁ। ଦେଖିଥିଲେ ରାମଗିରି। କୋଲାବର କିଛି ଦୂରରେ ଅବସ୍ଥିତ, ଘଞ୍ଚବନାନୀ ପରିବେଷ୍ଟିତ ରାମଗିରି ଆଶ୍ରମ ତାଙ୍କୁ ବି-ମୁଗ୍ଧ କରିଥିଲା। ସେଠାରେ ରଖିଥିଲେ ତାଙ୍କ କାବ୍ୟ ନାୟକ ବିରହୀ ଯକ୍ଷକୁ।

ଏହି କୋଲାବର ଦୂର ପାର୍ଶ୍ୱରେ ଓ ଇନ୍ଦ୍ରାବତୀ କୂଳରେ ଗଢ଼ି ଉଠିଥିଲା ସାମ୍ରାଜ୍ୟ। ଉତ୍ଥାନ ପତନର ପ୍ରକ୍ରିୟା ଭିତରେ ରାଜା ଆସିଥିଲେ, ରାଜବଂଶ ଆସିଥିଲେ, ପ୍ରତିଷ୍ଠାର ଶିଖର ଦେଶକୁ ଯାଇଥିଲେ ମଉଳି ଯାଇଥିଲେ ଅଜାଣତରେ।

ମହାକାନ୍ତାରକୁ ନଳ ଆସିଥିଲେ, କିଛିଦିନ ପାଇଁ ଗୁପ୍ତ ସାମ୍ରାଜ୍ୟର ଅଧୀନ ହୋଇଥିଲା ଏ ରାଜ୍ୟ। ମତ୍ସ୍ୟବଂଶୀ ରାଜା ଅଧିକାର କରିଥିଲେ ମତ୍ସ୍ୟପେଣ୍ଠ (ମାଛିମପେଟ୍ ଆଧୁନିକ ନାମ)। ପ୍ରପାତ ପରିପୂର୍ଣ୍ଣ ନଦୀର ନା ଦେଇଥିଲେ 'ମାଛକୁଣ୍ଡ'। ତାଙ୍କ ପ'ରେ ଆସିଥିଲେ ପୂର୍ବରଂଗମାନଙ୍କର ଗୋଟାଏ ଶାଖା। ଶିବ ଭକ୍ତ ଥିଲେ ସେମାନେ। ଗୁରୁ ପ୍ରିୟା ନଦୀର କୂଳେ କୂଳେ ଆସି ଅଧିକାର କରିଥିଲେ ମାଛକୁଣ୍ଡ ତଳଭାଗ। ଗୁରୁପ୍ରିୟାର ସଂଗମସ୍ଥଳୀରୁ ନଦୀର ନାଁ ପରିବର୍ତ୍ତିତ ହୋଇଥିଲା। ନିଜ ରାଜବଂଶ ଅନୁସାରେ ସେ ନଦୀ ହୋଇଥିଲା 'ସିଲେରୁ'। ସେମାନେ ଗଢ଼ିଥିଲେ ଶିବ, ପାର୍ବତୀ ଓ ଗଣେଶ ମୂର୍ତ୍ତି।

ସେମାନଙ୍କର ଅବକ୍ଷୟ ବେଳେ ପଶ୍ଚିମରେ ଥିବା ନାଗପୁର ଅଂଚଳରୁ ଗୋଟାଏ ଆଦିବାସୀ ସଂପ୍ରଦାୟର ରାଜା ଆସିଥିଲେ ଇନ୍ଦ୍ରାବତୀର ପୂର୍ବକୂଳକୁ। ରାଜ୍ୟ ସ୍ଥାପନ କରିଥିଲେ ଭୈରବ ଗଡ଼ରେ। ଆହୁରି ଆଗକୁ ଆସି ବାରସୁରରେ ନିଜର ରାଜଧାନୀ ବସେଇ ଥିଲେ। ସେ ରାଜ୍ୟର ରାଜାମାନେ ବୀର ଥିଲେ। ନିଜକୁ ନାଗଗୋତ୍ରୀ ବୋଲି ପରିଚୟ ଦେଉଥିଲେ। କହୁଥିଲେ, "ସେମାନଙ୍କ ରାଜବଂଶର ନାମ ଛିନ୍ଦକନାଗ।" ସେମାନେ ଥିଲେ ଦୁର୍ଦ୍ଧର୍ଷ ରଣପଟୁ। ସେମାନଙ୍କୁ ସାହାଯ୍ୟ କଲେ ଅବୁଝମାଳ ଅଞ୍ଚଳର ମାଢ଼ିଆ, ଗଣ୍ଡ, ମାରିଆ ସ୍ୱରିଆ ଧାକଡ଼, ହାଲଭା। ରାଜ୍ୟ ବିସ୍ତାର କରିବାରେ ଲାଗିଗଲେ ସେମାନେ। ସେମାନଙ୍କ ରାଜ୍ୟ ବିସ୍ତାର ଯୋଜନା ବେଳକୁ ଉତ୍ତରରେ ଥିଲେ ପ୍ରବଳ ପରାକ୍ରମୀ କାକତୂରୀ ବଂଶ। ଦକ୍ଷିଣ ପଶ୍ଚିମରେ ଥିଲେ ଓରୁଗାଲୁ (ୱାରାଂଗଲ)ର କାକତୀୟଙ୍କ। ତେଣୁ ସେମାନଙ୍କ ରାଜ୍ୟର ସଂପ୍ରସାରଣ ଆରମ୍ଭ ହୋଇଥିଲା ପୂର୍ବ ଦିଗକୁ। ଦୁର୍ବଳଂଶୀଳ ବଂଶଜ କୋଲାବ ପାଖରୁ ହଟେଇ ଦେବାରେ ଅସୁବିଧା ହୋଇ ନଥିଲା ଛିନ୍ଦକନାଗମାନଙ୍କୁ। ତା' ସହିତ ସେମାନେ ବୈବାହିକ ବଂଧନରେ ଆବଦ୍ଧ ହୋଇଗଲେ ୱାରଂଗଲର କାକତୀୟଂକ ସହ। କାକତୀୟମାନେ ଥିଲେ ଶୁଦ୍ର। ସେମାନଙ୍କର ରାଜଧର୍ମଥିଲା ଜୈନଧର୍ମ। ସେଠାରେ ଥିଲେ ଅତି ଉନ୍ନତ ଧରଣର ସ୍ଥପତି, ଶିଳ୍ପୀ। ଏ ଅଂଚଳ ଥିଲା ଆନ୍ଧ୍ର ଶୈଳୀର ଶିଳ୍ପକଳାର ପେଣ୍ଠ ସ୍ଥଳ।

ଆଂଧ୍ରଶୈଳୀ ଓ ଜୈନଧର୍ମ ଧାରଣା ସହ ଓତଃ ପ୍ରୋତ ଜଡ଼ିତ ହୋଇଗଲେ ଛିନ୍ଦର ନାଗମାନେ। ସେମାନେ ହୋଇଗଲେ ଜୈନ। ନିଜର ରାଜ୍ୟ ବିସ୍ତାରରେ ଲାଗିଲେ। ଧର୍ମ ପ୍ରଚାରରେ ଲାଗିଲେ। ନିଜ ରାଜ୍ୟର ନାମ ଦେଲେ ଚକ୍ରକୂଟ। ପ୍ରଥମେ ସେମାନେ ହୁଏ ତ କୋଲାବ ଅତିକ୍ରମ କରିଥିଲେ ରାମଗିରି ନିକଟରେ। କାରଣ କୋଲାବର ପଶ୍ଚିମ ପାଖରେ ରହିଛି ତୀରଥ ଗଡ଼। ସେଠାରେ ଅଛି ଗୁମ୍ଫା - ଠିକ୍ ଗୁପ୍ତେଶ୍ୱର ଗୁମ୍ଫାପରି। ତା'ପରେ ଅଧିକାର କରିଥିଲେ ଚିକିରାଗଡ଼ - କୋଲାବର ପୂର୍ବପାଖରେ ଏବଂ ଗୁପ୍ତେଶ୍ୱରର ଅନତି ଦୂରରେ। ଗୁପ୍ତେଶ୍ୱର ଓ ତୀରଥଗଡ଼ର ଗୁମ୍ଫା ଜୈନ ସନ୍ୟାସୀମାନଙ୍କର ଆଶ୍ରୟ ସ୍ଥଳି ହୋଇଥିବ ସେତେବେଳେ।

ରାଜ୍ୟ ବିସ୍ତାର ହୋଇଥିଲା ପୁଣି ପୂର୍ବକୁ। ଅଧିକାର କରି ନେଇଥିଲେ ଶୀଳ ରାଜାର ଗୋଟାଏ ପରେ ଗୋଟାଏ ଦୂର୍ଗ। ବୈପାରୀଗୁଡ଼ା ନିକଟର ବୀରଖମ୍ଭ ଦୂର୍ଗ କୋଟପାଡ଼ ଦୂର୍ଗ, ସିଂହରାଜ ଦୁର୍ଗ (ଆଧୁନିକ ଦିଗାପୁର), ବୋରିଗୁମ୍ଫା ଓ ସିଂହପୁର ଦୁର୍ଗ ଅଧିକାର କରିଥିବେ ସେମାନେ ଅନାୟାସରେ। ସେହିମାନେ ହିଁ ସ୍ଥାପନ କରିଥିବେ ବୋରିଗୁମ୍ଫା ପାଖ ଚିକିମା ପାହାଡ଼ରେ ରାଜା ଓ ରାଣୀଗୁମ୍ଫା - ଚାତୁର୍ମାସ୍ୟାରେ ପ୍ରବଜ୍ୟାକାରି ଜୈନ ସାଧୁ ଓ ସାଧ୍ୱୀମାନଙ୍କର ରହଣି ପାଇଁ। ଦେଓ ଘାଟୀର ପାଦ ତଳେ ଜନପଦ ବସେଇଥିବେ। ନାଁ ଦେଇଥିବ ଜୈନ ନଗର। ଏବେ ମଧ ଜୟପୁରର ପଶ୍ଚିମ ଅଂଶର ନାଁ ଜୈନ ନଗର। ଉଡ଼ିଥିବେ ଦେଶୋତୀ - କୋଲାବ କୂଳେ କୂଳେ, ବାଗ୍ରା ଡୁଡୁମା ପାଖଦେଇ। ବସତିସ୍ଥାପନ କରିଥିବେ କେଙ୍କୋଠାରେ। ଅଧିକାର କରିଥିବେ ରାଜୁ ବିଡେଲଗଡ଼। ଗେଲାଗଡ଼, ବିଜାପୁର ଗଡ଼। ମାଡ଼ି ଯାଇଥିବେ ଆଗକୁ। ଅଧିକାର କରିଥିବେ ନଂଦପୁର। ଶୀଳରାଜାକୁ ତଡ଼ି ଦେଇ ବସିଥିବେ

ବତ୍ରିଶ ସିଂହାସନରେ। ନଂଦପୁରଠାରୁ ପୂର୍ବ, ପଶ୍ଚିମ ଓ ଦକ୍ଷିଣକୁ ମାଡ଼ି ଯାଇଥିବେ ସେମାନେ। ପୂର୍ବରେ ଦୁଧାରୀ ଗଡ଼ (୪୩ ରାଜପଥର ପୂର୍ବରେ)। ଉତ୍ତରପୂର୍ବରେ ଭିତରଗଡ଼, ଦକ୍ଷିଣରେ ଭୈରବଗଡ଼, ଅମାବାଲି, ପଶ୍ଚିମରେ ମଗର ଅଧିକାର କରି ନେଇଥିବେ। ମାଡ଼ି ବସିଥିବେ ସଗରର ଦକ୍ଷିଣରେ ଥିବା ସଂକୀର୍ଣ୍ଣ ଚଟୁଆ ଗିରିପଥ।

ସେମାନେ ନିଶ୍ଚୟ ଥିଲେ ଦୂରଦର୍ଶୀ। ସେମାନଙ୍କ ରାଜ୍ୟକୁ ମାଡ଼ି ପାହାଡ଼ ମାଳାର ପୂର୍ବକୁ ନେଇ ନାହାନ୍ତି। ନେଇ ନାହାନ୍ତି ଇଂଦ୍ରାବତୀର ଦକ୍ଷିଣକୁ। ଡେଇଁ ନାହାନ୍ତି ଅନନ୍ତଗିରି ପାହାଡ଼ମାଳା। ସେମାନେ ଠଉରେଇ ନେଉଥିଲେ ମୁଗଲିଂଗରେ ଅବସ୍ଥାପିତ ଗଂଗମାନଂକର ପରାକ୍ରମ। ଜାଣି ଯାଇଥିଲେ ସେମାନଙ୍କ କଟକ ଅଧିକାର ବେଳର ସାହାସ।

ଛିଂଦକନାଗର ଦିଗ୍‌ବିଜୟୀ ରାଜା ପ୍ରଥମ ଓ ଦ୍ୱିତୀୟ ସୋମେଶ୍ୱର କେବଳ ପରାକ୍ରମୀ ନ ଥିଲେ, ଥିଲେ ଦୂରଦ୍ରଷ୍ଟା, ଜନନାୟକ। ସେମାନେ ଦେଖୁଥିଲେ ମଧ ଭାରତରେ ଜୈନର ପ୍ରଭାବ। ଦେଖୁଥିଲେ ପାର୍ଶ୍ୱନାଥ ପ୍ରତାରିତ ନିଶୀଥ ତନ୍ତ୍ରର ପ୍ରଭାବ। କୋଲାବ-ଶବରୀ-କୂଳରେ ଦେଖୁଥିଲେ ଗୋରଖନାଥ ପ୍ରବର୍ତ୍ତିତ ଶାବର ତନ୍ତ୍ରର ପ୍ରଭାବ। ଜାଁ ଭାଁ କେମିତି କରୁଣ୍ଡ ରାଜ୍ୟ ଓ ଗଂଗ ରାଜ୍ୟର ସୀମା ଅତିକ୍ରମ କଲାବେଳେ ଇନ୍ଦ୍ରାବତୀ କୂଳରେ ଦେଖିଥିଲେ ବୌଦ୍ଧ ତନ୍ତ୍ରର ପ୍ରଭାବ। ନିଜ ରାଜ୍ୟର ଧର୍ମ ଧାରଣା ଓ ତନ୍ତ୍ର ସହାୟତା ପାଇଁ ସେମାନେ ହୋଇ ଉଠିଥିବେ ତତ୍ପର। ସେମାନେ ଜୈନ ତନ୍ତ୍ରର ପ୍ରସାର ପାଇଁ ସାହାଯ୍ୟ କରିଥିବେ। ଜୈନ ତାନ୍ତ୍ରିକ ରାଣ ଦେଲାବେଳେ କହିଥିବ - ଭୂଇଁ ମାଳିକୁ କାଟ, ଇଂଦ୍ରକୁ କାଟ, ବରୁଣକୁ କାଟ। ରାଜାର ଆଶୀର୍ବାଦ ରହିଥିବ, ରହିଥିବ ପ୍ରଚ୍ଛନ୍ନ ସମର୍ଥନ। ନ ହେଲେକି ଜୈନ ତାନ୍ତ୍ରିକ ବରଣ ମାଳିକୁ କାଟିବ, ହିଂଦୁର ଇଂଦ୍ରକୁ କାଟିବ।

ତା ସହିତ ରାଜା ବସେଇଥିବେ ମୂର୍ତ୍ତି। ଗଢେଇଥିବେ ଜୈନ ତୀର୍ଥଂକରମାନଙ୍କର ମୂର୍ତ୍ତି। ସବୁଠାରୁ ଗ୍ରହଣୀୟ ଥିବ ପାର୍ଶ୍ୱନାଥଙ୍କ ମୂର୍ତ୍ତି। ତାଙ୍କ ମୁଣ୍ଡ ଉପରେ ସାତଫଣା ସାପ। ସେ ଅନନ୍ତନାଗର ପ୍ରତୀକ। ତାଂକର ଶାସନ ଦେବତା ଧରଣେଂଦ୍ର। ତାଙ୍କ ଦକ୍ଷିଣ ପଦ୍ମାବତୀ। ଜୈନ ତନ୍ତ୍ରର ଭୈରବ ନିଜେ ପାର୍ଶ୍ୱନାଥ, ତାଂକ ଭୈରବୀ ପଦ୍ମାବତୀ - ଯେମିତି ଓଡ଼ଃମାନଙ୍କ ପାଇଁ ଜଗନ୍ନାଥ ଭୈରବ ଏବଂ ବିମଳା ଭୈରବୀ। ପାର୍ଶ୍ୱନାଥଙ୍କର ଶହେ ଆଠ ଆଙ୍ଗୁଳ ଉଚ୍ଚର ଦିଗମ୍ବର ମୂର୍ତ୍ତି ତିଆରି କରିଥିବେ ସିଂହପୁର ଗଡ଼ରେ। ସିଂହପୁରଗଡ଼ କାଳକ୍ରମେ ହୋଇଯାଇଥିବ ଭୈରବ ସିଂହପୁର - ଭୈରବ ପାର୍ଶ୍ୱନାଥଙ୍କ ଅବସ୍ଥିତି ଅନୁସାରେ। (ଏବେ ସେହି ମୂର୍ତ୍ତି ଜୟପୁର ମ୍ୟୁଜିୟମ୍‌ରେ ଗଚ୍ଛିତ।) ତାଙ୍କ ଶାସନ ଦେବୀ ପଦ୍ମାବତୀ ଦିଉଦ୍ଧା ହୋଇ ଗଡ଼ମାଡ଼ି ବସିଛନ୍ତି ଇଂଜନ ପୁରରେ - ଇଂଦ୍ରାବତୀର ଦକ୍ଷିଣ ତଟରେ। ପାଖରେ ଅଛନ୍ତି ଧରଣେଂଦ୍ର - ସତେଅବା ସେମାନେ କାଳକୁରି ଆକ୍ରମଣକୁ ପ୍ରତିହତ କରିବା ପାଇଁ ଶହ ଶହ ବର୍ଷଧରି ଘାଟ ଜଗି ବସିଛନ୍ତି।

ବୋରିଗୁମ୍ମାରୁ ସଂଖୁଲେଇ, ସଂଖୁଲେଇରୁ ଭୈରବ ସିଂହପୁର, ଭୈରବ ସିଂହ ପୁରରୁ କୁମୁଳି, କାମତୀ, ଇଂଜନପୁର। ସବୁଠାରେ ଜୈନ ତୀର୍ଥଙ୍କର ମାନଙ୍କର ମେଳ, ଶାସନ ଦେବୀମାନଙ୍କର ଅବସ୍ଥିତି। ରାଜା, ଦୁର୍ଗପତି, ସାଧୁ, ଶ୍ରାବକ ଆସିଛନ୍ତି ଏ ଅଂଚଳକୁ। ନିଜ ପସନ୍ଦ ମୁତାବକ ତିଆରି କରିଛନ୍ତି ମୂର୍ତ୍ତି। କାହାର ମୂର୍ତ୍ତି ସ୍ଥାନୀୟ ବଡ଼ଦାନା ପଥରରେ ତିଆରି, କାହାର ମୂର୍ତ୍ତି ଉପକୂଳର ସୁଂଦର ବଉଳ ମାଳିଆ ପଥରରେ ରାଜା ହୋଇଛି। କେଉଁଠି କେମିତି ନୀଳ ମୁଗୁନି ପଥରରେ ଗଢା ତୀର୍ଥଙ୍କର। କେଉଁଠାରେ ସ୍ଥପତି ସ୍ଥାନୀୟ ଧର୍ମ ଧାରଣାକୁ ସ୍ଥାନ ଦେଇଛି।

ଜୈନ ପୂଜାରେ ଉପଚାର ଓ ବିଧିର ନିଗଡ଼ ବନ୍ଧନ ନାହିଁ। ତଥାପି ସେ ସମସ୍ତ ଦେବଦେବୀଙ୍କୁ ଏକାଠି ବାଂଧିରଖିବା ପାଇଁ ରାଜା ଠିକ୍ କରିଦେଇଛନ୍ତି ଉପଚାର, ବିଧି। କାହା ପାଖରୁ ଲାଠିଗଲେ ଅନ୍ୟପାଖରେ ଯାତ୍ରା ହେବ। କାହାର ଫୁଲ ଗଲେ ଅନ୍ୟ ଦେବତା ଭୋଗ ଖାଇବ। ମଣ୍ଡେଇ, ବାଲିଯାତ୍ରା, ଏମିତି ଭାବେ ପରସ୍ପର ସହିତ ସଂଶ୍ଳିଷ୍ଟ।

ରାଜା ଭୈରବଙ୍କ ପାଇଁ ତିଆରି କରିଛନ୍ତି ଜାମୁଣ୍ଡାରେ ଖଡ୍‌ଗାସନ ପାର୍ଶ୍ୱନାଥ ମୂର୍ତ୍ତି - ଘନନୀଳ ମୁଗୁନି ପଥରରେ। ଏବେ ମଧ ଫଣାଟେକା ସାପର ବେକ ପାଖ ଚମଡ଼ା କୁଂଚିତ ହୋଇ ସୁଂନ୍ଦର ଦେଖାଯାଏ। ମନେ ହେବ ସାପଟା ଜୀବନ୍ତ।

ସବୁ ଘାଟୀ ଜାଗାମାନଙ୍କରେ ତିଆରି ହୋଇଛି ପାର୍ଶ୍ୱନାଥ ମୂର୍ତ୍ତି। ଦମୟନ୍ତୀ ସାଗର କୂଳର ସୁରୁଣା ଦୁର୍ଗ ପାଖରେ ତିଆରି ହୋଇଛି ପଦ୍ମାସନ ପାର୍ଶ୍ୱନାଥ ମୂର୍ତ୍ତି। ତିଆରି ହୋଇଛି କୁମାର ଗଂଜଣା ପାଖ ପାରିବାରେ ପାର୍ଶ୍ୱନାଥ ମୂର୍ତ୍ତି। ସାତପଣା ସାପର ଦୁଇ ଫାଳିଆ ଜିଭ ଖୁବ୍ ଜୀବନ୍ତ ଏଠାରେ। ତିଆରି ହୋଇଛି ଭୈରବ ଗଡ଼ରେ ଦିଗମ୍ବର ପାର୍ବତିନାଥ - ୧୦୮ ଆଙ୍ଗୁଳ ଲମ୍ବା। ଦେହସାରା ପଟା ପଟା ଦାଗ। ଦେଖିଲେ ମନେହେବ ପଟାଳିଆ ବାଘଟାଏ ଠିଆ ହେଇଛି ପାହାଡ଼ ତଳେ।

ସେମିତି ପଟାଳିଆ ଆଉ ତିନିମୂର୍ତ୍ତି ଦେବତା ହଂଜରରେ। ଡାହାଣ ପାଖରେ ମହାବୀର, ମଝିରେ ଅମ୍ବିକା ଓ ବାଁ ପାଖରେ ପାର୍ଶ୍ୱନାଥ। ତିନୋଟି ପଥର ମୂର୍ତ୍ତି ଅତି ସୁନ୍ଦର ଭାବେ ଖଂଜା ହୋଇଛନ୍ତି। ବାଁ ଓ ଡାହାଣର ମୂର୍ତ୍ତି ପଦ୍ମାସନ, ମଝିରେ ଦେବୀ ମୂର୍ତ୍ତି ଦଣ୍ଡାୟମାନ। କିଏ କେଜାଣି ଆଦିବାସୀର ତିନି ଦେବତାକୁ ଏଇଠି ଏକାଠି କରିଦେଇଛି - ମନେ ପକେଇ ଦେଇଛି ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଂଙ୍କୁ। ଚୈତ୍ର ମାସରେ ଏ ତିନି ଦେବତା ନୀଳ ରଙ୍ଗରେ ପଟା ପଟା ବେଶ ହୁଅନ୍ତି ଠିକ୍ ଜଗନ୍ନାଥଂକ ମଇଳମଲାଗିପରି।

ଚକ୍ରକୂଟ ରାଜାର ରାଜ୍ୟ ବଢ଼ିଛି। ତାର ରାଜଧାନୀ ବାରସୁରରୁ ଅସିଛି ବସ୍ତର। ବସ୍ତରରୁ ଆସିଛି ଜଗଦଲପୁର। ରାଜ୍ୟର ସୀମା ବଢ଼ିଲେ ସୈନ୍ୟଚାଳନା ବଢ଼ିବ, ଭାଟ ବଢ଼ିବେ, ସାଧୁ ବଢ଼ିବେ, ବଢ଼ିବେ ବେପାରି। ସେମାନେ ବିଭିନ୍ନ ଜାଗାକୁ ଯିବେ କାମରେ। ରାଜାର କାମ ବାଟରେ କେମିତି ସେମାନେ

ସୁବିଧାରେ ରହିବେ, ସକାଳୁ ଉଠି ଅର୍ହତମାନଙ୍କୁ ଡାକିବେ। ବାଧିକା ପଡ଼ିଲେ ଦେବୀ ଅମ୍ବିକାଙ୍କୁ ଡାକି ରୋଗ ଭଲ କରିବେ। ଆପଦ ବିପଦ ପଡ଼ିଲେ ଚକ୍ରେଶ୍ୱରୀ, ପଦ୍ମାବତୀକୁ ଡାକିବେ। ତନ୍ତ୍ରର ସାଧନା ପାଇଁ ଜ୍ୱାଳାମାଳିନୀକୁ ଡାକିବେ। ସେଥିପାଇଁ ପ୍ରତି କୋଡ଼ିଏ ତିରିଶି କିଲୋମିଟର ଦୂରରେ ତିଆରି ହେଲା ମନ୍ଦିର, ଧର୍ମଶାଳା। ଏବେ ମଂନ୍ଦିର ନାହିଁ, ଧର୍ମଶାଳା ନାହିଁ। ଭଂଗା ମନ୍ଦିରର ଅନେକ ଖଣ୍ଡିତ ମୂର୍ତ୍ତି ମାଙ୍କଡ଼ କେନ୍ଦୁ ଜାମୁକୋଳି, ବେଲଗଛ ତଳେ ଖରାଖିଆ ହୋଇ ଦଣ୍ଡାୟମାନ।

ବୁଢ଼ାମାନେ କହନ୍ତି, କାଉ କା' କଲାବେଳେ ଜଗଦଲପୁରରୁ ବାହାରିଲେ ସେମାନେ ଜଉଁରା ନଦୀ ପାର ହୋଇ ମୁହଁ ସଂଜବେଳେ ପହଞ୍ଚୁଥିଲେ ଦେଓରଲିରେ। ସେଠାରେ ଏବେ ମଧ ଦୁଇଟି ମୂର୍ତ୍ତି ରହିଛି। ଗୋଟାଏ ଅତୀବ ସୁନ୍ଦର ଅମ୍ବିକା ମୂର୍ତ୍ତି। ଦୁଇ ହାତ ଭଂଗା। କୁତବ ସାହୀର ଆକ୍ରମଣରେ ହୁଏତ ସେ ଖଣ୍ଡିତ। ପାଖରେ ପୁରୁଣା ଭଂଗା ଦେଉଳ। ତା ପାଖରେ ତୀର୍ଥଙ୍କର।

ସେହି ପୁରୁଣା ବୁଢ଼ାମାନେ କହନ୍ତି, ସକାଳୁ ଦେଓରଳିରୁ ବାହାରିଲେ ସଂଞ୍ଜବେଳେ ପହଞ୍ଚୁଥିଲେ ସଉଁରାଗୁଡ଼ା। ସଉଁରାଗୁଡ଼ା ପାଖରେ ଚାମୁଣ୍ଡା। ସେଠାରେ ଅନେକ ତୀର୍ଥଯାତ୍ରୀଙ୍କର ମେଳ। ପୁରୁଣା ମନ୍ଦିରଟା ସାତ ଆଠ ବର୍ଷତଳେ ଭୁଷୁଡ଼ି ପଡ଼ିଥିଲା।

ସକାଳୁ ଚାମୁଣ୍ଡାରୁ ଚାଲିଲେ ଛାଇ ଲେଉଟାଣି ବେଳେ ପହଞ୍ଚି ହେଉଥିଲା। ଜୈନ ନଗର ଜୟପୁରରେ। ଜୟପୁର ପେଣ୍ଠସ୍ଥଳ। ଘାଟୀ ଉପରୁ ଓହ୍ଲେଇ ଲୋକ ବିଶ୍ରାମ ନେବେ ଜୟପୁରରେ। ଘାଟୀ ଉପରକୁ ଯିବା ଲୋକ ରାତିରେ ଏଠାର ରହି ସଜବାଜ ହେବେ। ଏଇଠି ତେଣୁ ଅନେକ ଜୈନ ମୂର୍ତ୍ତି। ସବୁଠାରୁ ବଡ଼ ଏବଂ ସବୁଠାରୁ ସୁନ୍ଦର ଷୋଳଭୂଜା ଚକ୍ରେଶ୍ୱରୀ। ସେ ଆଦି ତୀର୍ଥଙ୍କର ଋଷଭନାଥଂକ ଶକ୍ତି। ଏବେ ସେ ଭଗବତୀ-ଜଗନାଥଙ୍କର ବିମଳା। ସାମନାରେ ତାଙ୍କର ଦ୍ୱାରପାଳ ପରି ତୀର୍ଥଙ୍କର ଅଜୀତନାଥ ଓ ମହାବୀର। ଦୁହେଁ ଦିଗମ୍ବର-ଖଡ୍‌ଗାସନରେ ଛିଡ଼ା ହେଇଛନ୍ତି। ଆଖ ପାଖରେ ଋଷଭନାଥ, ତାଙ୍କ ଶାସନ ଦେବତା ଗୋ-ମୁଖ ନେମିନାଥଙ୍କ ଅମ୍ବିକା, ଅନେକ ଭଂଗାରୁଜା, ପାଣିଖିଆ ଜୈନ ଦେବ ଦେବୀ।

ତୀଖ ପାହାଡ଼ ଉପରକୁ ଉଠିଗଲେ ଦକ୍ଷିଣ ଦିଗରେ ଦେଓ ଡଂଗର। ଦେଓ ଡଙ୍ଗରରେ ମହାବୀର, ଧରଣେନ୍ଦ୍ର ପଦ୍ମାବତୀ, ଅମ୍ବିକା। ଗୁରୁମା ପ୍ରତି ସୋମବାରରେ ସେମାନଙ୍କୁ ଗାଧୋଇ ଦିଏ। ଗାଁର ଝିଅ ତାର ପ୍ରଥମ ଛୁଆକୁ ନେଇ ଆସେ ଅମ୍ବିକା ପାଖକୁ - ଆଶୀର୍ବାଦ ପାଇଁ। ଅନେକ କାମ ଏଇଠି। ତେଣୁ ମୂର୍ତ୍ତିସବୁ ଫମ୍ପା - ସୁନ୍ଦର। ଆଗରୁ ରାଜା ଅମଳରେ ଏଠାର ପ୍ରସିଦ୍ଧି ଖୁବ୍ ଥିଲା। ତେଣୁ ସରକାର ଲାଗି ହେଉଥିଲା ଏଠାରେ। କୋରାପୁଟର ପ୍ରସିଦ୍ଧ ଯାତ୍ରା ଏହି କେଚଲାରେ। କେଚଲାର ତିନି ପାଖରେ ପାହାଡ଼। ମଝିରେ ରୂପାପାତ ପରି କୋଲାବ ନଦୀ ବାଗ୍ରା ଡଙ୍ଗରରେ ତଳକୁ ଡେଇଁ ପ୍ରତି ପ୍ରପାତ ସୃଷ୍ଟି କରିଥିଲା। ଏହି ମନୋରମ ଦୃଶ୍ୟ ଉପଭୋଗ ପାଇଁ ଅନେକ ଜୈନ ମନ୍ଦିର ଥିଲା ଏଠାରେ। ସବୁ ଜୈନ ସ୍ଥପତି ହୁଏତ ଜୈନ ବାସ୍ତୁଶାସ୍ତ୍ରର ଉପଦେଶଟିକୁ ମନେ ରଖିଥିବେ -

> ଜନ୍ମ ନିଷ୍କ୍ରମଣ ସ୍ଥାନ ଜ୍ଞାନ ନିର୍ବାଣ ଭୂମିଷୁ।
> ଅନ୍ୟେଷୁ ପୂଣ୍ୟ ଦେଶେଷୁ ନଦୀ କୂଳେ ନଗେଷୁଚ॥
>
> ଗ୍ରାମାଦି ସନ୍ନିବେଶେଷୁ ସମୁଦ୍ର ପୁଳିନେଷୁ ଚ।
> ଅନ୍ୟେଷୁ ବା ମନୋଜ୍ଞେଷୁ କାରୟେ ଜୀନ ମଂନ୍ଦିରମ୍॥

ଏହି ମନୋଜ୍ଞ ଜାଗା ଜୈନ ମନ୍ଦିର ପାଇଁ ଉପଯୁକ୍ତ ବିବେଚିତ ହୋଇଥିବ। କେଚଲାରୁ ଚାଲିଲେ ପାଲିବା ପହଞ୍ଚିବ ସଂଞ୍ଜବେଳେ। ପାଲିବାରେ ପାର୍ଶ୍ୱନାଥ, ଧରଣେନ୍ଦ୍ର ପଦ୍ମାବତୀ ଓ ଋଷଭନାଥ ଅଛନ୍ତି। ସେଠାରୁ କୋଶେଦୂର କୁମାର ଗଂଜଣାରେ ବାରଭୂଜା ଚକ୍ରୋବରୀ -

ପାଲିବାଠାରୁ ଦୁଇ କୋଶ ଦୂରରେ ପୀତେଇଗୁମ୍ଫା - ଚାତୁର୍ମାସ୍ୟାରେ ରହୁଥିଲେ ଜୈନ ସାଧୁମାନେ।

ପାଲିବାର ପୂର୍ବକୁ ଦୁଇଟା ଡଂଗର ପାରହୋଇ ତିନି ମୂଣ୍ଡି ଥିବା ଦେବତା ଦୂଙ୍ଗର। ଦେବତା ଦୂଙ୍ଗର ପାର୍ଶ୍ୱନାଥ କଥା ଆଗରୁ କୁହାଯାଇଛି। ମଝିରେ ଥିବା ଦେବୀ ମୂର୍ତ୍ତିକୁ ଗଦବାମାନେ ଡାକନ୍ତି ଶିରିଦେବୀ ବୋଲି। ଦେବତା ହଙ୍ଗରର ଦୁଇଟା ଡଂଗର ଆଗରେ ଲାମଡ଼ା ଡଂଗର। ଗଦବାର ପ୍ରସିଦ୍ଧ ଗୋ-ଚର ଜାଗା। ଗୋ-ଚରରେ ପୋଢ଼ ବଳି ହୁଏ, ସ୍ୱର୍ଗତ ଆତ୍ମାର ଶାନ୍ତି ପାଇଁ। ବଳି ପୋଢ଼ର ମାଂସଖଣ୍ଡ ପୋତାଯାଏ ନଦୀରେ, ନାଳରେ, କୂଅରେ। ସ୍ଥାନୀୟ ଅଧିବାସୀଙ୍କ ବିଶ୍ୱାସ ମାଂସ ଖଣ୍ଡ ପୋତିଲେ ପାଣି ଶୁଖେ ନାହିଁ। ଲାମଡ଼ା ଡଙ୍ଗରର ପୂର୍ବ ଭାଗରେ ଅନ୍ୟ ଏକ ପାହାଡ଼ର ଢାଲୁ ଅଂଚଳରେ ରହିଛି ପଦ୍ମାବତୀ ମୂର୍ତ୍ତି। ଅତି ଚମତ୍କାର ଅଷ୍ଟଭୂଜା ମୂର୍ତ୍ତି। ଅଷ୍ଟଭୂଜା ଡଙ୍ଗର ପାର ହେଲେ ଗୋଟାଏ ସମତଳ ଅଂଚଳରେ ଜ୍ୱାଳାମାଳିନୀ ମୂର୍ତ୍ତି। ସେ ଶବାରବୀ-ଜୈନ ତନ୍ତ୍ରର ଏକ ଚିହ୍ନ। ପାଲିବାରୁ ଏଇଟା ବାଟଥିଲା ବିଜାପୁର ଯିବା ପାଇଁ ଏବଂ ବିଜାପୁରରୁ ସୁବାଇ।

ସୁବାଇ ଜୈନ ମୂର୍ତ୍ତିମାନଙ୍କର ପେଣ୍ଠସ୍ଥଳ। ସେଇଠି ଅଛନ୍ତି ଦ୍ୱାଦଶ ଭୂଜା, ଚତୁର୍ଭୂଜା ଚକ୍ରେବେରୀ। ଚତୁର୍ଭୂଜା ଚକ୍ରୋବରୀକୁ ଦେଖିଲେ ମନେ ହେବ, ପରଜା ଧାଂଗିଡ଼ୀକୁ ପାଖରେ ବସେଇ ତାର ପ୍ରତିଛବିଟିଏ ତିଆରି କରିଦେଇଛି ଶିଳ୍ପୀ। ସେଠାରେ ବସିଛନ୍ତି ଋଷଭନାଥ, ମହାବୀର। ସମସ୍ତଙ୍କ ମନକୁ ପାଇଲା ପରି ଚତୁର୍ବିଂଶତି ପଟ - ଗୋଟାଏ ପଥରରେ ଚବିଶ ତୀର୍ଥଙ୍କର।

ସୁବାଇର ପଶ୍ଚିମକୁ ଟିଂଗୁଡ଼ି ଚୂଆଁ। ଟିଂଗୁଡ଼ି ଚୂଆଁ ପାର ହେଲେ ନଂଦପୁର। ନନ୍ଦପୁର ଦେଖିଛି ଅନେକ ରାଜା। ରାଜୁଡ଼ା ଉଜୁଡ଼ା ହେବା ଦେଖିଛି। ଦେଖିଛି ଯୁଦ୍ଧର ଘନଘଟା। ଯୁଦ୍ଧରେ ସଜିତ ନଂଦପୁରର ସବୁ ଜୈନମୂର୍ତ୍ତି ଭାଙ୍ଗି ରୁଜି ଯାଇଛି। ପଡ଼ିଛି କେତୋଟା ହାତଗୋଡ଼, ମୁଣ୍ଡ-ଭିତର ଗଡ଼

ପାଖରେ। ଆଉ ଯାହାଦା ଅକ୍ଷତ ଥିଲା ତା'କୁ ଚୋରମାନେ ନେଇ ଯାଇଛନ୍ତି।

ନନ୍ଦପୁରରୁ ଇଶାଣୀ ଗଙ୍ଗା ନଦୀ ଡେଇଁ ଗଲେ ହିକିମପୁଟ। ହିକିମପୁଟର ପଶ୍ଚିମକୁ ଚଟୁଆ। ଏ ଥିଲା ଗୁରୁତ୍ୱପୂର୍ଣ୍ଣ ଘାଟୀ। ସେଠାରେ ଏବେ ମଧ୍ୟ ଜୈନ ମୂର୍ତ୍ତି ରହିଛି। ବର୍ଷରେ ଥରେ ମେଳା ହେଉଛି।

ସୁବାଇରୁ ଦକ୍ଷିଣକୁ ଗଲେ ଭୈରବଗଡ଼। ଭୈରବଗଡ଼ରେ ପାର୍ଶ୍ୱନାଥ। ତାଙ୍କ ସହିତ ଧରଣେନ୍ଦ୍ର ପଦ୍ମାବତୀ, ଅମ୍ବିକା। ଭଙ୍ଗା ମନ୍ଦିରର ଗଜଲକ୍ଷ୍ମୀ ଫଳକ ଏବେ ମଧ୍ୟ ସୁରକ୍ଷିତ। ଏଠାରେ ପାଇକ ଓ ମାଳି ବହୁତ। ଏଠାକାର ପାଇକ ଓ ମାଳିମାନେ ଲାଦିରେ ଭାର ନିଅନ୍ତି। ପାଖରେ ଥିବା ମରୁଆ ଗାଁରେ ଲାଦି ହୁଏ। ଜେଡଲା ଲାଦି ପ'ରେ ଇଏ ଅନ୍ୟ ଏକ ପ୍ରସିଦ୍ଧ ଲାଦି ଜାଗା।

ଭୈରବଗୁଡ଼ାରୁ କୋଲାବର ଗୋଟାଏ ଧାରର କୂଳେ କୂଳେ ଗଲେ ପଡ଼େ ଝିରଝିରା। ଝିରଝିରାରେ ରହିଛି ଗୋଟାଏ ଖଣ୍ଡିତ ଚବିଶ ପଟ ତୀର୍ଥଙ୍କର ମୂର୍ତ୍ତି। ଝିରଝିରାରୁ ଚଢ଼ିବାକୁ ପଡ଼େ ଡୋଙ୍କରି ଘାଟୀ। ଡୋଙ୍କରୀ ଘାଟୀର ପୂର୍ବ ପାଖରେ ଦେଓ ପଟାଂଗୀ। ଆଗେ ନାଁ ଥିଲା ଦେଓ ପଟିଂଗୀ। ପଟିଂଗୀ ସେଇ ନାଁରେ ଜଣେ ସେନାପତି ଚିଂଦଗନାଗ ରାଜାର ସୈନ୍ୟ ଚାଳନା କରିଥିଲେ ଡମ ରାଣୀଙ୍କ ବିରୁଦ୍ଧରେ। ତାଙ୍କ ନାଁ ଅନୁସାରେ ପଟାଙ୍ଗୀ ଗାଁ। ଦେଓ ପଟାଙ୍ଗୀରେ ଏବେ ମଧ୍ୟ ରହିଛି ପଟିଙ୍ଗୀ ଭୋଇଖଣ୍ଡା। ପାଖରେ ଭଷଭନାଥ। ଭଂଗା ଅଷ୍ଟଭୂଜା ମୂର୍ତ୍ତିଟାଏ ରହିଛି ଗାଁ ପାଖରେ। ଦକ୍ଷିଣରେ ଶେଷ ଘାଟୀ ଅଂପାବାଲିରେ। ସେଠାରେ ଜୈନ ମୂର୍ତ୍ତି ଓ ଗୁମ୍ଫା।

ଦେଓ ପଟାଙ୍ଗୀର ପୂର୍ବରେ, ଦେଓମାଳି ପଂଚପଟମାଳି ପର୍ବତର ମଝିରେ ଅବସ୍ଥିତି ଦୁଧାରି। ଝଂଜାବତୀ କୂଳରୁ ଶତ୍ରୁ ଆକ୍ରମଣକୁ ରୋକିବା ପାଇଁ ସେଇଠି ଥିଲା ଦୁର୍ଗ। ପୂଜାପାଇଁ ତିଆରି ହୋଇଥିଲା ଜୈନମୂର୍ତ୍ତି। ମହାବୀର, ଋଷଭନାଥ, ଧରଣେଂଦ୍ର ଓ ପଦ୍ମାବତୀଙ୍କ ମୂର୍ତ୍ତି ଏବେ ମଧ୍ୟ ପୂଜା ପାଉଛନ୍ତି। ଏଠାକାର ଧରଣେନ୍ଦ୍ର ବ୍ୟାଖ୍ୟାନ ମୁଦ୍ରାରେ ବସିଛନ୍ତି। ଏ ଅଂଚଳରେ ନାଳରୁ ପାଣି ଶୁଖେ ନାହିଁ। ତେଣୁ ମାଳିମାନେ ଏଇଠି ରହିଥିଲେ। ଭଲ ଚାଷବାସ କରୁଥିଲେ। ପଶ୍ଚିମ ପାଖରୁ ରାମଗିରି ଠାରୁ ଜୟପୁର ଆସିବା ପାଇଁ ଗୋଟାଏ ବାଟ। ବାଟରେ କୋଲାବ ଅତିକ୍ରମ କରିବାକୁ ପଡ଼େ। ଆଗେ କୋଲାବରେ କୁମ୍ଭୀର ମାଳ ମାଳ ହେଉଥିଲେ। ସବୁଠାରେ ନଦୀ ପାର ହେବା କଷ୍ଟକର। ସିଂହରାଜଗଡ଼ ପାଖରେ ନଦୀ ପାର ହେଉଥିଲେ ଲୋକେ। ସେଇଠି ଥିଲା ଜୈନ ମନ୍ଦିର। ଏବେ ମଧ୍ୟ ରହିଛି ଭୈରବ ଦିଗମ୍ବର ଜୈନ ତୀର୍ଥଙ୍କର ସବୁ। ରହିଛି ତିନି ଥାକର ନେମୀନାଥ, ଅମ୍ବିକା ଓ ବଂଜାରୁଣି ଦେବୀ। ବଂଜାରୁଣୀ ସିଂହ ଉପରେ ବସିଛନ୍ତି। ହାତରେ ଡାଳଟାଏ। ଏଇଠି ଗଉଡୁଣୀ ଗରୁମାଣ୍ଡ ପିଲାମାନଙ୍କ ମଂଗଳ ପାଇଁ କଣ୍ଢା ଦୋଳିରେ ଝୁଲେ। କଣ୍ଢା କଠଉ ପିନ୍ଧି ଚାଲେ। ଏଠାରେ ଆଦିବାସୀ ଓ ଜୈନ ପରଂପରାର ଅପୂର୍ବ ସମନ୍ୱୟ ଘଟିଛି।

କାଳଚକ୍ରର ପ୍ରଭାବରେ ଏହି ଜୈନ ଦେବ ଦେବୀ ଭିତରୁ କେତେ ଆଦିବାସୀର ଦେବତା ହେଇ ବଳି ଖାଉଛନ୍ତି, ପାଇକର ବୈଷ୍ଣବ ଭୈରବ ଭୈରବୀ ହୋଇ ଯାଇଛନ୍ତି କୋଶଲିଆ ମାଳିର ଶିବ ହୋଇ ନିରାମିଷ ରହିଛନ୍ତି।

ଏତେ ମୂର୍ତ୍ତି। ତିନିଶହ ବର୍ଷର ରାଜପୃଷ୍ଠପୋଷକତା। ତା ସତ୍ତ୍ୱେ ସ୍ଥାନୀୟ ଅଧିବାସୀ ଜୈନ ମୂର୍ତ୍ତିକୁ ନିଜର ବୋଲି କହି ନାହିଁ। ଦେବତା ହଂଜରରେ ଯେତେବେଳେ ଗଦବା ତିନି ମୂର୍ତ୍ତିକୁ ପୂଜା କରୁଛି ସେ ପ୍ରଥମେ କହୁଛି –

*ଅଭମେ-ତରା ବିତିକା ନ କରୁ*
*କଲା କଥା ସିଧି ଡେମେ।*
*ଗୋଡ଼କେ କାଟା ମୁଣ୍ଡକେ ଲାଠା ରକେଁ।*

ତା'ର ଡର ସାପ ଫଣା ଥିବା ଜୈନ ମୂର୍ତ୍ତିକୁ। ତାର ସନ୍ଦେହ କାଳେ ଦେବତାଟା ଫାଙ୍କିଦେବ।

ପରଜା ତାର ଲାଞ୍ଜିରେ ଧାଂଗିଡ଼ୀ ମାଧମରେ ଗାଉଛି –
*ହୀରା ମୁଦି ବନ୍ ଛଡ଼େଇ ବେଟିଲା।*
*ହୀରା ମୁଦି ବନ୍ ଛଡ଼େଇ ଅଣାଇଲେ*
*ଚାଇଁରେ ମନ ଲାଗେ ନାଇଁ।*
*(ବନ ଛଡ଼େଇ - ପରଦେଶୀ।)*

ଜୈନ ରାଜୁତିବେଳେ ଶ୍ରାବକମାନେ ହୀରା ଓ ଅନ୍ୟ ବହୁମୂଲ୍ୟ ପଥରର ବ୍ୟବସାୟ ପାଇଁ ଆସୁଥିଲେ କୋରାପୁଟ ଅଂଚଳକୁ। ସେହି ବ୍ୟବସାୟୀକୁ ଲକ୍ଷ୍ୟ କରି ଏହି ଗୀତ। ଧାଙ୍ଗିଡ଼ୀ ତାକୁ ଗ୍ରହଣ କରୁ ନାହିଁ।

ସେ ତା'ର ନିଜକୁ ହିଁ ପ୍ରାଣ ଦେଇ ଭଲ ପାଉଛି। ସେ ତା'ର ହଳଦୀଗୁଣ୍ଡୀ ଦେବୀକୁ ଛାଡ଼ିନି, ଛାଡ଼ି ନାହିଁ କାଂଦୁଲ ଭଜା ଦେବୀକୁ। ଛାଡୁ ନାହିଁ ମଶାଣୀ ମୁଣ୍ଡାକୁ।



# ଲିଡ଼ର

ରାମନାଥ ପଣ୍ଡା

"ଓଁ ଆନନ୍ଦ ମୟି
ଚୈତନ୍ୟ ମୟି
ସତ୍ୟମୟି
ପରମେ !"

ଅସୀମା ମନେ ମନେ ଗୁଣୁ ଗୁଣୁ ହୋଇ ସମୁଦ୍ରର ଢେଉ ରାଶି ଯେଉଁଠୁ ମଥା ପିଟି ପିଟି ଫେରିଯାଏ, ସେଇ ବାଲୁକା ଶଯ୍ୟାର ଧାରେ ଧାରେ ପଦଚାରଣ କରୁଥାଏ । କିନ୍ତୁ, ନିଘା ରଖିଥାଏ ଅଦୂରରେ ଶୀତରେ ଥରିଥରି ଲୁଗା ବଦଳାଉଥିବା ତାର ବୁଢ଼ୀମା'ଟି ଉପରେ ।

ପୁରୀ ସମୁଦ୍ର କୂଳ ।

ରାତି ପାହି ନ ଥାଏ କି ସକାଳ ହୋଇ ନ ଥାଏ । ଏପରି ଏକ ସନ୍ଧିକ୍ଷଣ । ହଠାତ୍ ଜଣେ ଅପରିଚିତ ତରୁଣ ସାମ୍ନାକୁ ଚାଲିଆସି କହିଲା, "ଗୁଡ୍ ମର୍ଣିଂ ।"

'ମର୍ଣିଂ....' ବେପରୁଆ ସ୍ୱରରେ ଏହି ପଦକ କହିଦେଇ ଅସୀମା ଯୁବକ ସାମ୍ନାରୁ ନିଜକୁ ଦୂରେଇ ନେଇ ବୁଢ଼ୀମା ଆଡ଼କୁ ଆଗେଇଲା ।

'ମାଡ଼ାମ୍' ପଛରୁ ଡାକିଲା ଯୁବକଟି ।

'ୟେସ୍'.... ଅସୀମା ଠିଆ ହେଲା ଏକ ଇସ୍ପାତ ଖୁଣ୍ଟ ଭଳି ।

କ୍ଷିପ୍ର ଗତିରେ ପାଖେଇ ଆସି ତରୁଣଟି କହିଲା, "ପାଞ୍ଚଦିନ ହେଲା ଠିକ୍ ଏଇ ସମୟରେ, ଏଇ ଜାଗାରେ ଆପଣଙ୍କୁ ଦେଖୁଛି । କେଡ଼େ ସୁନ୍ଦର ଆପଣ । ମୋତେ ଆପଣ..."

"ଥାଉ । ଆପଣ ଆପଣଙ୍କ ବାଟରେ ଚାଲି ଯାଆନ୍ତୁ ।" ଅସୀମା ଦ୍ରୁତ ପଦକ୍ଷେପରେ ଆଗେଇଲା ।

ଅତି ଅତର୍କିତ ଭାବରେ ଯୁବକଟି ହଠାତ୍ ସାମ୍ନାକୁ ଧାଇଁ ଆସି ଅସୀମାକୁ କୁଣ୍ଢେଇ ଧରିବାକୁ ଉଦ୍ୟମ କରିବା ମାତ୍ରେ ଅସୀମା ଏତେ ଜୋର୍‌ରେ ତା' ହାତ କଟଟିକୁ ମୋଡ଼ି ଦେଲା ଯେ, ଏଡ଼େ ସବଳ ଯୁବକଟି ଆଖିପିଛୁଡ଼ାକେ ଚିତ୍କାର କରି ଛାଟିପିଟି ହେଲା ।

କିଛିକ୍ଷଣ ପ'ରେ, ସମ୍ଭବତଃ ହାତର ବେଦନା କମିବା ଉତ୍ତାରେ ଯୁବକଟି ନିଜକୁ ସମ୍ଭାଳି ନେଇ ପୁନର୍ବାର ଅସୀମା ଆଡ଼କୁ ଆଗେଇଲା । କିନ୍ତୁ ସେତେବେଳକୁ ଅସୀମା ତା' ବୁଢ଼ୀମା ପାଖକୁ ଚାଲି ଆସିଥିଲା ଓ ଯୁବକଟି ତା' ପାଖରେ ପହଞ୍ଚିବାମାତ୍ରେ ବୁଢ଼ି ପଡ଼ି ଏପରି କଡ଼ା ନଜରରେ ତା ଆଖିକୁ ଚାହିଁ ରହିଲା, "ସତେ ଯେମିତି ଏକ ଘାଉଡ଼ ବାଘୁଣୀ ତାର ହିଂସ୍ର ଶିକାରୀର ଆଖିକୁ କ୍ରୋଧାନ୍ୱିତ ହୋଇ ଚାହିଁ ରହିଛି ଏବଂ ସେହି ଚାହାଣୀରୁ ପ୍ରଚଣ୍ଡ ସାହାସ, ଅପ୍ରତିହତ ନିର୍ଭୀକତା ଓ ପ୍ରବଳ ପ୍ରତିଆକ୍ରମଣ ପ୍ରବୃତ୍ତିର ଜ୍ୱଳନ୍ତ ଅଗ୍ନୀକଣା ବିଚ୍ଛୁରିତ ହେଉଛି ।

ଏଇ ହେଉଛି ବିପଦ ଆପଦକୁ ସମ୍ନା କରିବାରେ ଅସୀମାର ସ୍ୱଭାବ ସୁଲଭ ଆତ୍ମଶକ୍ତି ପ୍ରୟୋଗର ସରଳ ଉପାୟ । ବାସ୍ତବରେ ଅସୀମା କୌଣସି ପରିସ୍ଥିତିରେ ବି ଡରି ଯିବାର କି ହାରି ଯିବାର ଝିଅ ନୁହେ । ପିତୃହୀନା ହେବା ଦିନୁ ଏମିତି କେତେ ବିପଦ ଆପଦରେ ସେ ନିଜକୁ ଓ ପରିବାରକୁ, ଅସହାୟ ସାଙ୍ଗସାଥି ଝିଅମାନଙ୍କୁ ରକ୍ଷା କରି ଆସିଛି । ଦୁର୍ଦ୍ଦାନ୍ତ ଗୁଣ୍ଡା ଓ ମଦ୍ୟପ କାମୁକମାନଙ୍କ ସାମ୍ନା କରି ନାକେଦମ୍ କରି ଛାଡ଼ିଛି । ସେଥିପାଇଁ ବୋଧେ କଲେଜର ଛାତ୍ରଛାତ୍ରୀମାନେ ତାର ନା ଦେଇଛନ୍ତି - 'ଲିଡ଼ର' ।

ଦେଖିବାକୁ ଗଲେ ଅସୀମା ସେମିତି କିଛି ମୋଟିରୋଟି ବଳଶାଳିନୀ ସ୍ତ୍ରୀଲୋକ ନୁହେଁ । ଲମ୍ବା ପତଳା ଅଠର ବର୍ଷର ସାଧାରଣ ଝିଅଟିଏ ମାତ୍ର । କିନ୍ତୁ ତାର ପରିମାର୍ଜିତ କଂଟିବାର ଢଙ୍ଗ, ଦେବ ସୁଲଭ ଆଚାର ବ୍ୟବହାର, ଚାଲି ଚଳନ ଦେଖିଲେ ଯେ କୌଣସି ଲୋକ ତା ପ୍ରତି ଆକୃଷ୍ଟ ହୁଏ । ଦେଖିବାକୁ ବି ଭାରି ସୁନ୍ଦର । ଯାହା କୁହାଯାଏ - ଗୋଟିଏ ଚାଉଳରେ ଗଢ଼ା । ବିଶେଷ କରି ଅସୀମାର ଗଭୀର ଆତ୍ମବିଶ୍ୱାସ, ଭଗବତ୍ ନିଷ୍ଠା ଓ ଭାଗବତୀ ଶକ୍ତିର ସୁରକ୍ଷା ଉପରେ ଅତୁଟ ଭରସା - ତାର ଏକୁଟିଆ ଜୀବନର ବଡ଼ ପାଥେୟ । ତାର ଆତ୍ମଜ୍ଞାନ, ଆପଣାର ଦେହ ମନ ପ୍ରାଣ ଓ ଚୈତ୍ୟ ସତ୍ତା ସହ ତାର ବୁଝାବଣା ହେଉଛି, ତାର ଦୈନନ୍ଦିନ ଜୀବନର ବଡ଼ ଅବଲମ୍ବନ । ତାର ଦୃଢ଼ ବିଶ୍ୱାସ ଯେ, ସେ ଡାକି ଦେଲେ ତାର ଅନ୍ତରାତ୍ମା ତାକୁ ଆବଶ୍ୟକ ଶକ୍ତି, ସାହସ ସୁରକ୍ଷା ତତ୍‌କ୍ଷଣାତ୍ ଯୋଗାଇ ଦେଇ ଥାନ୍ତି । ସେମିତି ଘଟେ ମଧ୍ୟ ।

ଅସୀମାର ଘର କୋରାପୁଟ ଜିଲ୍ଲାର ଜୟପୁର ପାଖ କୋଲାବ ନଗରରେ । ତା ବାପା କୋଲାବ ପ୍ରୋଜେକ୍ଟରେ ଚାକିରୀ କରୁଥିଲେ । ଦୈବାତ୍ ଏଇ କେଇ ବର୍ଷ ତଳେ ତାଙ୍କର ଦେହାନ୍ତ ହୋଇ ଯାଇଛି । କିନ୍ତୁ ସେଠାରେ ଘରଦ୍ୱାର କରି ସେମାନେ ରହି ଗଲେଣି । ଅସୀମା କୋଲାବ ନଗର ଶ୍ରୀ ଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷା କେନ୍ଦ୍ରର ଜଣେ ଅଗ୍ରଣୀ ଛାତ୍ରୀ ଭାବରେ ପ୍ରଥମେ ସର୍ବଜନ ପ୍ରଶଂସିତ ହେଉଥିଲା । ସ୍କୁଲ ଶିକ୍ଷା ପରେ ସେ ଯେତେବେଳେ ଜୟପୁର କଲେଜରେ ପଢ଼ିଲା, ସେଠି ବି ସେ ଲୋକପ୍ରିୟ ହୋଇ ଉଠିଲା ।

ବାପା ତ ନାହାନ୍ତି। ଜଣେ ମାତ୍ର ଭାଇ। ସେ ପୁଣି ଆମେରିକାର କୌଣସି ସହରରେ ଚାକିରୀ କରନ୍ତି। ଘରେ କେବଳ ମା' ଓ ବୁଢ଼ୀମା। ସେମାନଙ୍କର ଏକମାତ୍ର ଅଭିଭାବକ ହେଉଛି ଅସୀମା। ବୁଢ଼ୀମା'ଙ୍କ ବୟସ ଅଶିରୁ ବେଶି। ତାଙ୍କର ଶେଷ ଇଚ୍ଛା ଥିଲା - ଏ ବର୍ଷ ଯେମିତି ହେଉ ସେ କାର୍ତ୍ତୀକ ମାସର ପାଞ୍ଚଦିନ ପୁରୀରେ କଟାଇବେ। ପଞ୍ଚୁକ ପାଞ୍ଚଦିନ ବଡ଼ି ଭୋରୁରୁ ଉଠି ସମୁଦ୍ର ସ୍ନାନ କରି, ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରିବେ। ବେଳାଏ ମାତ୍ର ହବିସାନ୍ନ ଭୋଜନ କରି ମନ୍ଦିର ବେଢ଼ାରେ ସମୟ କଟାଇବେ। ବୁଢ଼ୀମା'ଙ୍କର ଏଇ ଶେଷ ଇଚ୍ଛାକୁ କାର୍ଯ୍ୟକାରୀ କରାଇବା ଏକ ପରମ କର୍ତ୍ତବ୍ୟ ମନେ କରି ଅସୀମା ତାଙ୍କୁ ନେଇ ପୁରୀ ଆସିଛି। ଆଜି ଭଳି ଗତ ପାଞ୍ଚ ଦିନ ହେଲା ରାତି ନ ପାହୁଣୁ ବୁଢ଼ୀମା'ଙ୍କୁ ନେଇ ଏଠାକୁ ଆସୁଛି ସମୁଦ୍ର ସ୍ନାନ ପାଇଁ। ଆଜି ହେଉଛି ଶେଷ ଦିନ। ଏବଂ ଏଇ ଶେଷ ଦିନଟା'ରେ ଏଇ ଅଘଟଣଟି ଘଟି ଯାଇଛି।

ଯେତେବେଳେ ଆକ୍ରମଣକାରି ଯୁବକଟି ପୁନର୍ବାର ପାଖକୁ ପାଖକୁ ପାଖେଇ ଆସିଲା, ଅସୀମା ତା' ଆଖି ଯୋଡ଼ିକୁ ଏପରି ତୀକ୍ଷ୍ଣ ଓ ତୀବ୍ର ଦୃଷ୍ଟିରେ ଚାହିଁ ରହିଲା ଯେ, ଯୁବକଟିର ବୋଧହେଲା ସତେକି ସେ' ଚାହାଣୀରୁ ଖାଲି ଜଳନ୍ତା ନିଆଁର ତୀରମାନ ଛିଟିକି ଆସି ତା' ହୃଦୟକୁ ବିଦୀର୍ଣ୍ଣ କରି ଦେଉଛି। ତେଣୁ ସେ ଆଉ ଅଧିକ ଆଗକୁ ଆଗେଇ ନପାରି ସେଇଠି ଠିଆ ହୋଇ ପଡ଼ିଲା। ପରେ ପରେ ତା ମନ ଭିତରେ ଅକସ୍ମାତ କି' ଭାବାନ୍ତର ଜାତ ହେଲା କେଜାଣି, ସେ ଆହୁରି ଦଶହାତ ଦୂରକୁ ଘୁଞ୍ଚିଗଲା।

''ଯାଅ, କ୍ଷମା କରିଦେଲି।'' ସ୍ମିତହାସ୍ୟ ସହ ଏତିକି କହି ଦେଇ ଅସୀମା ବୁଢ଼ୀମାଙ୍କୁ ସାଙ୍ଗରେ ନେଇ ସ୍ୱର୍ଗଦ୍ୱାର ଆଡ଼କୁ ଆଗେଇ ଚାଲିଲା।

ଶ୍ରୀ ମନ୍ଦିରର ଦକ୍ଷିଣ ଦ୍ୱାର ସାମ୍ନାରେ ଥିବା ବସାଘରେ ପହଁଚିବାର ଦଶ ମିନିଟ ଭିତରେ ପୁଣି ସେ' ଯୁବକ ଦ୍ୱାର ସାମ୍ନାରେ ଉଭା ହେଲା।

'ପୁଣି କୁଆଡ଼େ ?'

ଏଥର ଅସୀମା ଏକ ପ୍ରକାର ଆଶ୍ଚର୍ଯ୍ୟ ଚକିତ ଦୃଷ୍ଟିରେ ଚାହିଁ ରହିଲା ଯୁବକର ମୁହଁକୁ। ମନେ ମନେ ଭାବିଲା - ଏଇଟା କଣ ପାଗଳ ହୋଇ ଗଲଣି ନା କଣ ? ଟିକିଏ ଧମକ ପୂର୍ଣ ଗଳାରେ ଜୋର୍ ଦେଇ ସେ ଗମ୍ଭୀର ସ୍ୱରରେ ଆବୃତ୍ତି କଲା —

''*Most men are the animals, driven by the forces of Nature! whatever desires come, they fulfil them, whatever emotions come they allow them to play, whatever physical wants they have, they try to satisfy*''.

ପଚାରିଲା, ''ଆପଣ କଣ ଏଇ ଶ୍ରେଣୀର ଏନିମଲ ?''

ଏଥର ଯୁବକଟି କିଛି କଥା ନ କହି ଅସୀମାର ପାଖକୁ ଚାଲିଆସି ତା ଗୋଡ଼ ତଳେ ମୁଣ୍ଡିଆ ମାରିଲା।

''ଆରେ ଆରେ ଯେ କଣ ? ଆପଣ ତ ମୋ'ଠୁ ବୟସରେ କେତେ ବଡ଼। ମୋତେ କାହିଁକି ମୁଣ୍ଡିଆ ମାରୁଛନ୍ତି ? ପୁଣି କାହିଁକି ଏଠାକୁ ଆସିଛନ୍ତି ?'' ଅସୀମା ପଛକୁ ଘୁଞ୍ଚିଯାଇ କହିଲା।

''ମୋତେ ଆପଣ କ୍ଷମା କରିଛନ୍ତି। ତେଣୁ ସେହି ସାହାସରେ ପୁଣି ଆସିଲି ଅନ୍ତରର ଏକ ଅଦମ୍ୟ ଜିଜ୍ଞାସାର ତାଡ଼ନାରେ... ସେଥିପାଇଁ ମଧ କ୍ଷମା ମାଗୁଛି।''

''ଆଶ୍ଚର୍ଯ୍ୟ। ଏତେ ଚଞ୍ଚଳ ଆପଣ ଏଡ଼େ ନରମ ହୋଇଗଲେ କେମିତି ?'' ଅସୀମା ପଚାରିଲା।

''ଟିକିଏ ସମୟ ଦେଲେ, ଧିରସ୍ଥିର ହୋଇ ବସିଲେ ଯାଇ ପଚାରିବି। ଦୟାକରି ବର୍ତ୍ତମାନ କିଛି ସମୟ ଦେଇ ପାରିବେ କି ? ନଚେତ୍ ଆଉ ଯେତେବେଳେ କହିବେ, ଆସିବି। ବର୍ତ୍ତମାନ କେବଳ ଏତିକି କହୁଛି ଯେ, ନୈତିକ ବଚାରରେ ମୁଁ ଜଣେ ପଥଭ୍ରଷ୍ଟ ଦୁର୍ଦ୍ଧାନ୍ତ ଯୁବକ। ଆପଣ ଯାହା କହିଲେ, କେବଳ ପାଶବିକ ପ୍ରବୃତ୍ତିଦ୍ୱାରା ପରିଚାଳିତ ଜଣେ ପଶୁଭଳି ମଣିଷ। ମୋ'ଘର ଏଇ ପୁରୀ ସହରରେ। ଏମ୍.ଏ.ପାଶ କଲାପରେ ଚାକିରୀ ଖୋଜିଖୋଜି ନିରାଶ ହେଲା ପରେ, ଯାହା ମନକୁ ଆସିଲା କରି ଚାଲିଛି। ଭଲମନ୍ଦ ବିବେକ ବିଚାର କିଛି ରହୁନାହିଁ। ସଙ୍ଗ ମେଳରେ ପଡ଼ି ନାନା ଦୁଷ୍କର୍ମରେ ମାତୁଛି। କିନ୍ତୁ ଆଶ୍ଚର୍ଯ୍ୟ ଏହି ଯେ, ଆଜି ଆପଣଙ୍କ ସଂପର୍କରେ ଆସିଲାବେଳୁ ମୋ' ଭିତରଟା ସଂପୂର୍ଣ୍ଣ ବଦଳି ଯାଇଥିବା ମୁଁ ଅନୁଭବ କରୁଛି। ଏକ ନୂଆ ଭାବରେ ସାରା ଶରୀର ବାରମ୍ବାର ରୋମାଞ୍ଚିତ ହୋଇ ଉଠୁଛି। ମନେ ହେଉଛି ମୋର ପୁନର୍ଜନ୍ମ ହୋଇଛି। କେବଳ ମୋ ମନର ବେଦନାକୁ ଆପଣଙ୍କ ଆଗରେ ପ୍ରକାଶ କରି ଆପଣା ଅନ୍ତରର ଉଦ୍‌ବେଗ ଉଦ୍‌ବେଳିତ ଉତ୍ତାଳ ତରଙ୍ଗର ଧକ୍କାକୁ ସହ୍ୟ କରିବାକୁ ଚାହୁଁଛି। ତେଣୁ...

''ସେ ଯାହା ବି ହେଉ, ଆପଣ ଏପରି ଥରାକୁଥର ମୋ' ପାଖକୁ ଆସିବା ଶୋଭନୀୟ ନୁହେ। ତେବେ ଏଇ ଥରକରେ ଯାହା କହିବା କଥା କହି ଦିଅନ୍ତୁ। ଯାହା ପଚାରିବା କଥା ପଚାରି ନିଅନ୍ତୁ। ଯା'ପରେ ଆଉ ମୋ' ପାଖକୁ ଆସିବେ ନାହିଁ।''

'ଧନ୍ୟବାଦ!' ଯୁବକଟି ସ୍ୱସ୍ତିର ନିଶ୍ୱାସ ନେଲା। ଅସୀମା ଟିକିଏ ଏପାଖେ ସେ ପାଖକୁ ଚାହିଁ କହିଲା, ''ଏଠି ତ ଛୋଟ ବଖୁରିଏ ଘର। ତା' ଭିତରେ ବୁଢ଼ୀ ମା' କଣ ପୂଜାପୂଜି କରୁଛି। ତେଣୁ ଏଇ ବାରଣ୍ଡାରେ ହିଁ ବସିଯିବା।

ସଙ୍ଗେ ସଙ୍ଗେ ସେ ମସିଣାଟିଏ ଘରୁ ଗୋଟେଇ ଆଣି ବାରଣ୍ଡାରେ ପାରିଦେଇ କହିଲା, ‘‘ବସନ୍ତୁ ! ଆପଣଙ୍କ ଶୁଭନାମ ?’’

‘‘ବରୁଣ’’।

‘‘ଓଃ ସମୁଦ୍ରର ଦେବତା ? ସେଥିପାଇଁ ସମୁଦ୍ର କୂଳରେ ଏତେ ବିଖ୍ୟାତ କରନ୍ତି ?’’ ଅସୀମା ହସିଲା। ବରୁଣ ବି ହସି ପକାଇଲା।

ବରୁଣ ଏଥର ଯଥା ସମ୍ଭବ ନିଜ ମନର ଆବେଗ, ଉତ୍କଣ୍ଠା ଓ ଉତ୍ତେଜନାକୁ ସଂଯତ କରି ମଧୁର ସ୍ୱରରେ ଆରମ୍ଭ କଲା - କିଛି ମନେ କରିବେ ନାହିଁ, କେବଳ ମୋ ମନର କୌତୂହଳ ମେଣ୍ଟାଇବା ପାଇଁ ପ୍ରଥମେ ଗୋଟିଏ ଅଖାଡୁଆ ପ୍ରଶ୍ନ ପଚାରିବି। ଖରାପ ଲାଗିଲେ କ୍ଷମା କରିବେ। ପ୍ରଶ୍ନଟି ହେଉଛି - ଆପଣଙ୍କର ଚେହେରା ଯାହା, ସେଥିରେ ଏତେ ଶକ୍ତି ଆସିଲା କିପରି ? ଯାହାକୁ ଏଇ ତିନିଦିନ ତଳେ ପାଞ୍ଚଜଣ ଯୁବକ ଠେଙ୍ଗାରେ ପିଟି ପିଟି ଆୟତ୍ତ କରିପାରି ନଥିଲେ। ତା’କୁ ଆପଣ ଆପଣଙ୍କର ଏଇ ସରୁସରୁ ହାତ ଦି’ଟାରେ କିପରି ଏତେ ଜୋର ଚିପିଦେଇ ନାକେଦମ୍ କରିଦେଲେ। ଏ ରହସ୍ୟଟି ଜାଣିବା ପାଇଁ ମୋ ମନ ବଡ଼ ଛଟ ପଟ ହେଉଛି। ମୋତେ ତ ବଡ଼ ମିରାକେଲ ମନେ ହେଉଛି....

‘‘ଆଚ୍ଛା ! ମଣିଷ ଶରୀର - ମାନେ ଏଇ ଆଖିକୁ ଦେଖା ଯାଉଥିବା ରକ୍ତମାଂସର ଦେହ ନୁହେ, ଏ ଦେହକୁ ଘେରି ରହିଥିବା ଓ ସୂକ୍ଷ୍ମ ଶରୀରର ବହୁ ଗଭୀରରେ ଅନ୍ତରାତ୍ମା ବୋଲି ଗୋଟିଏ ପଦାର୍ଥ ଥାଏ। ଜାଣିଛନ୍ତି ନା ନାହିଁ ?’’

‘‘ଏତେ ପାଠ ପଢ଼ିଛି, କିନ୍ତୁ ଏ ବିଷୟରେ ତ କେହି କିଛି ପଢ଼ାଇ ନାହାନ୍ତି କି ମୁଁ ନିଜେ ବି ପଢ଼ି ନାଇଁ କେବେ।’’

‘‘ଏଇତ ଅସୁବିଧା। ସେଥିପାଇଁ ତ ଏତେ ଦୁରାବସ୍ଥା। ଅତଏବ କିପରି ମୁଁ ଆପଣଙ୍କୁ ବୁଝାଇବି। ଗୋଟାଏ ବଣ ଭାଲୁକୁ ସଙ୍ଗୀତର ମୂର୍ଚ୍ଛନା କଣ କିପରି ବୁଝାଇବି ? ଯାହାହେଉ ଏତିକି କହିଲେ ହେବ ଯେ, ଏଇ ରକ୍ତମାଂସ ଦେହର ଶକ୍ତି ବଡ଼ ସୀମିତ। କିନ୍ତୁ ତାର ଅନ୍ତର୍ଶକ୍ତି ଅସୀମ। ସେଇ ଶକ୍ତିକୁ ଆବାହନ କରି ଜାଣିଲେ, ସେ ଶକ୍ତିକୁ ପ୍ରୟୋଗ କରିପାରିଲେ, ମଣିଷ ଯାହାଇଚ୍ଛା ତାହା କରିପାରିବ। ଅବଶ୍ୟ ଭଗବତ୍ କୃପା ବିନା ସେହି ଶକ୍ତି ପ୍ରାପ୍ତ ହେବା ସମ୍ଭବ ନୁହେ। ତେବେ ମୋ’ କ୍ଷେତ୍ରରେ କଥାଟି ଆଉଟିକିଏ ଭିନ୍ନ। ମୁଁ ନିଜେ ସ୍ୱୟଂ ଜଗତ୍ ଜନନୀଙ୍କର ଆଶ୍ରିତ। ସେ’ ମୋତେ ସବୁ ଆପଦ ବିପଦ ବେଳେ ସୁରକ୍ଷା ଦିଅନ୍ତି, ଶକ୍ତି ଦିଅନ୍ତି, କୌଶଳ ବି ବତେଇ ଦିଅନ୍ତି। ଏହା ମିରାକେଲ ନୁହେ। ସାଧାରଣ ଘଟଣା ! ତେବେ ଅତୁଟ ବିଶ୍ୱାସ, ଭରସା ରଖିପାରିଲେ ଯାଇ ଏହା ସମ୍ଭବ ହୋଇଥାଏ।’’

‘ବୁଝି ପାରିଲେ ନାହିଁ ନା ? ପ୍ରକୃତରେ ଏ ସବୁ କଥା ବୁଝାଇ ହେବ ନାହିଁ। ଏହା ହେଉଛି ଉପଲବ୍ଧିର ବିଷୟ। ଅଭ୍ୟାସର ବିଷୟ। ମଣିଷ ଯଦି ଏ କଥାଟିକୁ ଅନୁଭବ ଭିତରକୁ ନେଇ ଆସି ପାରନ୍ତା, ବହୁ ସମସ୍ୟାର ସମାଧାନ ହୋଇ ଯାଆନ୍ତା। ବିଶେଷକରି ଆଜିକାଲି ଗୁଣ୍ଡାମୀ, ଧର୍ଷଣ ଆଦି ଉଚ୍ଛୃଙ୍ଖଳତା ଯେପରି ବଢ଼ି ଚାଲିଛି, ସେଥିରେ ଆତ୍ମରକ୍ଷା ପାଇଁ ଏଇ ହେଉଛି ପ୍ରକୃଷ୍ଟ ପନ୍ଥା। ବିଶେଷ କରି ଝିଅମାନେ, ସ୍ତ୍ରୀ ଲୋକମାନେ ଯେପରି ଅସହାୟ ଭାବେ ଅତ୍ୟାଚାରିତ ହୁଅନ୍ତି, ତାହା ବନ୍ଦ ହୋଇ ଯାଆନ୍ତା। ପୋଲିସ୍ ବାଲାଙ୍କ, ପ୍ରଶାସନିକମାନଙ୍କର ବି ମୁଣ୍ଡବଥା ଦୂର ହୋଇ ଯାଆନ୍ତା।

ତଥାପି ବରୁଣ କଥାଟାକୁ ବୁଝିପାରିଲା ନାହିଁ। ଏହା ଜାଣି ପାରି ଅସୀମା କହିଲା, ‘‘ଆପଣ ଏ ସବୁ ବିଷୟ ପାଇଁ ମୋ’ ପାଖକୁ ନ ଆସି ନିକଟସ୍ଥ ଶ୍ରୀ ଅରବିନ୍ଦ ଭବନ କିମ୍ବା ମାତୃ ମନ୍ଦିରକୁ ଗଲେ ଭଲ ହେବ। ସବୁ କିଛି ବୁଝି ପାରିବେ।’’



‘‘ଉଚ୍ଚ ହେବା ପାଇଁ ଜନ ଯଦି ଆଶା,
ଉଚ୍ଚ କର ଆଗେ ନିଜ ମାତୃ ଭାଷା।’’
— ଗଙ୍ଗାଧର ମେହେର

‘‘ମାତୃ ଭୂମି ମାତୃ ଭାଷାର ମମତା
ଯା’ ହୃଦେ ଜନମି ନାହିଁ,
ତାକୁ ଯଦି ଜ୍ଞାନୀ ଗଣରେ ଗଣିବା
ଅଜ୍ଞାନ କହିବା କାହିଁ ?’’
— ଗଙ୍ଗାଧର ମେହେର।

# "କୋରାପୁଟର ଲୋକଗୀତ ଏବଂ ସଂସ୍କୃତି"

**ଶ୍ରୀ ନରସିଂହ ମିଶ୍ର**

"କୋରାପୁଟିଆକୁ ଅନ୍ୟମାନେ ତାଚ୍ଛଲ୍ୟଭରା ଆଖିରେ ଚାହାନ୍ତି। ସତକଥା ସେ' ଅଶିକ୍ଷାର ଅଂଧକାରରେ ଆବଦ୍ଧ - ଦାରିଦ୍ର୍ୟର କଷାଘାତରେ ଜର୍ଜରିତ - ଅନାହାର ମୃତ୍ୟୁର ଅହରହ ଶିକାର - ଅଗମ୍ୟ ବନ ପାହାଡ଼ରେ ବସବାସ କରେ। ତା'ର ଜୀବନ ଧାରଣର ମାନ ସର୍ବନିମ୍ନ ସ୍ତରରେ। ତଥାପି କୋରାପୁଟିଆ ନିଜକୁ କୋରାପୁଟିଆ ବୋଲି ପରିଚୟ ଦେବାରେ ଗର୍ବ ଅନୁଭବ କରେ। ତାର ବିଶାଳ ଆଞ୍ଚଳିକ ସୀମାବିଭବ ଭରା ବନ୍ୟ ସଂପଦ - ବିପୁଳ ଖନିଜ ସଂପଦ ବିରାଟ ନଦୀ ବଂଧ ଯୋଜନା - ସ୍ୱାଧୀନତା ସଂଗ୍ରାମରେ ତା ପୂର୍ବ ପୁରୁଷର ଗୌରବମୟ ଭୂମିକା - ଉନ୍ନତ ସଂସ୍କୃତି - ଆତିଥେୟତାର ଅକ୍ଷୁର୍ଣ୍ଣ ପରମ୍ପରା ଓ ସମୃଦ୍ଧଶାଳୀ ଲୋକ ସାହିତ୍ୟ, ଏତେ ସବୁର ଅଧିକାରୀ ହୋଇ ସେ କାହିଁକି ନିଜକୁ ଛୋଟ ମନେ କରିବ।

ଜୀବନ ନିର୍ବାହ କରିବା ପାଇଁ କୋରାପୁଟର ଆଦିବାସୀ ପ୍ରଧାନତ କୃଷି ଉପରେ ନିର୍ଭର କଲେ ବି ଯୁଗ ଯୁଗ ଧରି ଚଳି ଆସୁଥିବା ପ୍ରାଚୀନ ପଦ୍ଧତିକୁ ହିଁ ଅନୁସରଣ କରେ ଓ କୃଷିରୁ ଯାହା ଆଦାୟ ହୁଏ ଅତି କଷ୍ଟରେ ଛ'ମାସ ହିଁ ତାର ଗୁଜରାଣ ମେଣ୍ଟାଏ। ବର୍ଷର ଅନ୍ୟ ସମୟତକ ସେ ସଂପୂର୍ଣ୍ଣଭାବେ ନିର୍ଭର କରେ ବଣର କଂଦା, ଝରିଚ୍, କେନ୍ଦୁ ଓ ମହୁଲ ଉପରେ। ଫସଲ ଅମଳ ପରେ ଯାହା କିଛି ଆଦାୟ ହୁଏ, ସେଥିରୁ କିଛି କିଛି ସଂଗ୍ରହ କରି ଗାଁ ମୁଖିଆ ଘରେ ଜମାରୁହେ। କାଳେ ସମୟ ଅସମୟରେ ଅତିଥି ଅଭ୍ୟାଗତ ବା ସରକାରୀ କର୍ମଚାରୀ ଗାଁ କୁ ଆସିବେ, ସେମାନେ ତ ଆଉ ଭୋକିଲା ପେଟରେ ଶୋଇବେ ନାହିଁ, ଅତିଥି ସତ୍କାର ପାଇଁ ଏ ହେଲା କୋରାପୁଟିଆର ସଂସ୍କୃତି। ଅବଶ୍ୟ ଅନେକ ଅତିଥି ଆସି କାଳକ୍ରମେ ଏହି ମାଟିକୁ ଆଦରି ନେଇଛନ୍ତି ଓ ସ୍ଥାନୀୟ ଅଧିବାସୀଙ୍କ ସହ ନିଜକୁ ସଂପୂର୍ଣ୍ଣ ଭାବେ ମିଶାଇ ଦେଇଛନ୍ତି। ଅବଶ୍ୟ ସମୟର ସ୍ରୋତରେ ଭାସି ଯାଉଯାଉ ଅନେକ ଆଦିବାସୀ ଅତିଥି ମାନଙ୍କର ଶିକାର ପାଲଟିଛନ୍ତି। ସେମାନଙ୍କର ସଂପର୍କ ପାଲଟି ଯାଇଛି ସାହୁକାର ଓ ଖାତକ ରୂପରେ; ତଥାପି ବଢ଼ାଇ ଥିବା ବଂଧୁତ୍ୱର ହାତକୁ ଆଉ ଫେରାଇ ନେବାକୁ ଆଦିବାସୀ ଚାହିଁନି।

ଦେଶ ବିଭାଜନ ପରେ ଭାରତକୁ ଶରଣାର୍ଥୀମାନଙ୍କର ଯେଉଁ ନିରବଚ୍ଛିନ୍ନ ସ୍ରୋତ ଛୁଟି ଆସିଲା ଓ ସେମାନଙ୍କର ଥଇଥାନର ସମସ୍ୟା ସରକାରଙ୍କୁ ବିଚଳିତ କରିଦେଲା ତା'ର ସମାଧାନ କରି ପାରିଥିଲା ଏକମାତ୍ର କୋରାପୁଟ। ଯେଉଁ ଜଙ୍ଗଲ ଉପରେ ନିର୍ଭର କରି କୋରାପୁଟିଆ ଯୁଗଯୁଗ ଧରି ନିଜର ପେଟ ପୋଷୁଥିଲା, ତାକୁ ଧ୍ୱଂସକରି ସେଇଠି ଗଢ଼ିଉଠିଲା ଶରଣାର୍ଥୀମାନଙ୍କର ବାସସ୍ଥଳି। କେତେକ ଆଶ୍ରୟହୀନ ଜନତାର ଥଇଥାନ ପାଇଁ ଅନେକ ମାଟିର ସନ୍ତାନ ଚୀରଦିନ ପାଇଁ ହରାଇ ବସିଲେ ତାଙ୍କର ଖାଦ୍ୟ ଭଣ୍ଡାର, ତଥାପି କୋରାପୁଟିଆ କେବେହେଲେ ବିଦ୍ରୋହ ବା ବିପ୍ଳବ କରିନି। ଆପଣ ଭାବି ପାରନ୍ତି, ଏହା ହେଲା କୋରାପୁଟିଆର ଦୁର୍ବଳତା, କିନ୍ତୁ ଆଦୌ ନୁହଁ ଏ ହେଲା ତା'ର ମାନବିକତା ଓ ସହନଶୀଳତା। ଏହାହିଁ ହେଲା କୋରାପୁଟିଆର ପରିଚୟ ଓ ସଂସ୍କୃତି। କିନ୍ତୁ ଚୈତ୍ର ମାସରେ ଯେତେବେଳେ ତାର ପର୍ବ ଆରମ୍ଭ ହୋଇଯାଏ, ଗାଁ ନିକଟସ୍ଥ ରାସ୍ତାକୁ ଦିନକ ପାଇଁ ଅବରୋଧ କରି କୋରାପୁଟିଆଣୀ ଫାଉଲ ମାରେ। ହେଉ ପଛକେ ପାଞ୍ଚ ପଇସା ବା ଦଶ ପଇସା ଦେବାକୁ ହିଁ ପଡ଼ିବ; ଥାଉ ତା'ର ଦାବୀକୁ ମାନିବାକୁ ପଡ଼ିବ ଯେ, ସେହି ହେଉଛି ଏ ମାଟିର ପ୍ରକୃତ ସନ୍ତାନ। ତେଣୁ କୋରାପୁଟିଆଣୀ ଗୀତ ଗାଏ –

"ପୂର୍ବର ରୀତି ବୋଲି ମାଗି ଆଇଲୁ,<br>
ରାଜାର ପର୍ବବୋଲି ମାଗି ଆଇଲୁ"

"ଆମେ ତୁମକୁ ହାତ ପାତି ମାଗୁନୁ ଏ ହେଲା ରାଜାର ପର୍ବ ଓ ପୂର୍ବର ପରଂପରା" ଏହା ହେଲା ତାର ସ୍ୱାଭିମାନ।

ତାର ସାବଲୀଳ ସମାଜିକ ଜୀବନ ଲୋକ ସାହିତ୍ୟ ଓ ଲୋକ ନୃତ୍ୟର ଉତ୍କୃଷ୍ଟତା ଅତୀତରେ ଅନେକ ଚିନ୍ତାଶୀଳ, ବିଜ୍ଞ ଓ ଧନୀସଂଧିତ୍ସୁ ପଣ୍ଡିତଙ୍କ ମନରେ ଚମକ ସୃଷ୍ଟି କରିଛି। ଯାହାର ମାୟାରେ ଡକ୍ଟର ଭି.ଆଲୱଇନଙ୍କ ଭଳି ଗବେଷକ ବର୍ଷ ବର୍ଷ ଧରି ସେମାନଙ୍କ ଗହଣରେ ରହି "Bondoes the High Lander" ଓ Maria Murder & Suicide" ଭଳି ଉଚ୍ଚ କୋଟୀର ଗବେଷଣାତ୍ମକ ସାହିତ୍ୟ ସୃଷ୍ଟି କରିପାରିଛନ୍ତି। ସୁ-ସାହିତ୍ୟିକ ଗୋପିନାଥ ମହାନ୍ତିଙ୍କର "ପରଜା" ଓ "ଅମୃତର ସନ୍ତାନ" ଆଜି କେବଳ ଓଡ଼ିଆ ସାହିତ୍ୟ ବା ଭାରତୀୟ ସାହିତ୍ୟର ସଂପଦ ହୋଇନି ବରଂ ବିଶ୍ୱସାହିତ୍ୟରେ ତା'ର ସ୍ୱତନ୍ତ୍ର ସ୍ଥାନ ରହିଛି। କୋୟାନୃତ୍ୟ, ଗଦବାନୃତ୍ୟ ବା ଗଂଡ଼ନୃତ୍ୟ କେବଳ ଶ୍ରେଷ୍ଠ ନୃତ୍ୟ ହିସାବରେ ରାଷ୍ଟ୍ରିୟ ସମ୍ମାନ ପାଇନି, ଭାରତର ବିଭିନ୍ନ ପ୍ରାନ୍ତର ନୃତ୍ୟପ୍ରେମୀ ଓ ନୃତ୍ୟ ସମାଲୋଚକମାନଙ୍କର ଅକୁରିତ ପ୍ରସଂଶା ଲାଭ କରିବାରେ ସମର୍ଥ ହୋଇ ପାରିଛି।

କୋରାପୁଟ ହେଉଛି ଭାରତୀୟ ଆଦିବାସୀ ସଂସ୍କୃତିର ମିଳନ ପୀଠ। ବର୍ତ୍ତମାନ ଭାରତରେ ଥିବା ଦୁଇଟି ଆଦିବାସୀ ସଭ୍ୟତା "ପ୍ରଟୋଅଷ୍ଟ୍ରଲୟେଡ୍" ଓ ଦ୍ରାବିଡ଼ିୟନ୍ ଉଭୟେ ଏଠାରେ

ବସବାସ କରନ୍ତି। ଓଡ଼ିଶାର ତାଲିକା ଭୁକ୍ତ ୬୨ ଆଦିବାସୀ ସଂପ୍ରଦାୟ ମଧ୍ୟରୁ କେବଳ କୋରାପୁଟରେ ଏକ ତୃତିୟାଂଶ ସଂପ୍ରଦାୟର ଲୋକେ ବସବାସ କରନ୍ତି। ମାଟିଆ, କଟିଆ, ଭତର୍, ଭୂମିଆ ଓ ପରଜା ସଂପ୍ରଦାୟର ଭାଷା 'ଓଡ଼ିଆ' ହେବା ସ୍ଥଳେ କୋୟା, ବଂଡ଼ା, ଗଦବା, ଡିଡ଼ାୟି, କଂଧ, ଶବର ଓ ଗଂଡ଼ ଇତ୍ୟାଦି ସଂପ୍ରଦାୟର ସ୍ୱତନ୍ତ୍ର ଭାଷା ରହିଛି। ପ୍ରତ୍ୟେକ ସଂପ୍ରଦାୟର ବେଶଭୂଷା, ଆଚାର ବ୍ୟବହାର, ନୃତ୍ୟ ସଂଗୀତ ଓ ସାମାଜିକ ଚଳଣିରେ ଯଦିଓ ସ୍ୱତନ୍ତ୍ର ସତ୍ତା ରହିଛି, ତଥାପି ଗୋଟିଏ ସଂପ୍ରଦାୟର ସଂସ୍କୃତିର ଛାପ ଅନ୍ୟ ପାଖରେ ଅନେକ କ୍ଷେତ୍ରରେ ପରିଲକ୍ଷିତ ହୁଏ।

ଯେତେବେଳେ ଶରତର ନୀଳ ଆକାଶରେ ଜହ୍ନ ହସେ, ସେହି ଜ୍ୟୋତ୍ସ୍ନାର କୁହୁକରେ କୋରାପୁଟିଆର ମନ ଦୋହଲି ଉଠେ, ସେ' ନୂଆଖିଆ ପର୍ବ ପାଳନ କରେ। ଚଇତର ଉତଲା ପବନ ବି ତାକୁ କମ ପାଗଳ କରେନି। ଚଇତ ପର୍ବର ସମାରୋହରେ ସେ' ଶିକାର କରେ - ଲଂଡାପିଏ। ଯେତେବେଳେ ମନର ଆନନ୍ଦ ମୁଣ୍ଡକୁ ଉଠିଯାଏ ସେ' ରାତିସାରା ଗୀତ ଗାଏ - ନାଚ କରେ, ଭୁଲିଯାଏ ତା'ର ଅଭାବ ଅନାଟନ - ଭୁଲିଯାଏ ଆସନ୍ତା କାଲିର ଆବଶ୍ୟକତା। ଚିନ୍ତାକରି ତ' ଦୁଃଖ ଦୂର ହୁଏ ନି! ଯେତେଦିନ ବଂଚିଛ ନାଚ, ଗାଅ ଆଉ ଆନନ୍ଦ କର, ଏଇୟା ହେଲା ତା'ର ଜୀବନ ଦର୍ଶନ।

କେଉଁ ବିଦଗ୍ଧ କବି ଜୟପୁରକୁ ପ୍ରଥମେ ରୂପ ରାଜ୍ୟର ଉପାଧିରେ ଭୂଷିତ କରିଥିଲେ କେଜାଣି; ସାଧାରଣ ଲୋକଙ୍କର ସୁନ୍ଦର ସ୍ୱାସ୍ଥ୍ୟ, ପରିଷ୍କାର ବେଶଭୂଷା, ମାର୍ଜିତ ବ୍ୟବହାର ଓ ଉନ୍ନତ ସଂସ୍କୃତି ଆଜି ବି ତାର ପ୍ରମାଣ ଦିଏ।

ଆପଣ ପ୍ରଥମ କରି ଜୟପୁର ଆସିଛନ୍ତି, ସ୍ଥାନୀୟ ଆଦିବାସୀଙ୍କ ସାମାଜିକ ଜୀବନ ସହ ଆଦୌ ପରିଚିତ ନୁହନ୍ତି - ଚାଲିଗଲେ କୌଣସି ମଫସଲକୁ। ହୁଏ ତ ଶୀତ ବଳୟିତ ଜହ୍ନ ରାତିରେ ନିଆଁ ପୋଇ ପୋଇ ଦଳଦଳ ସ୍ତ୍ରୀ-ପୁରୁଷ ବସିଛନ୍ତି ଖୋଲା ଆକାଶ ତଳେ। ନ ହେଲା ରାସ୍ତାରେ ଯାଉ ଯାଉ ଦେଖିଲେ ପୁରୁଷମାନେ ଜମି ଚଷି ଚାଷ କାମ କରୁଛନ୍ତି ଓ ସ୍ତ୍ରୀମାନେ ପହ୍ଲାରୋଇ ଚାଲିଛନ୍ତି। ହଠାତ୍ ଶୁଣିବାକୁ ପାଇଲେ ଧାଂଗଡ଼ା କଣ୍ଠରେ ଗୁଂଜରୀ ଉଠିଲା ଚଇତ ପର୍ବ ଗୀତର ସୁର୍-ଝଂକାର –

*ବାଳିଫୁଲ ମୋ'ର ସେବତି ସୋରା*
*ତଳକେ ମୁକୁତା ଉପରେ ଝରା।*
*ବାଇଗନି ମଞ୍ଜିଆ ନେତ,*
*ନ ଖାଇ ନ ପିଇ ଏଡ଼େ ଗମାତ*
*ଚାଖିଲେ ହେତା କେମତ।*
*ଝୁମି ଯା' ଝୁମି ଯା' ଚଂଦନ ବନେ*
*ବାସ କେ' ଭମର ଛନେ।*

ଆପଣ ହୁଏତ ସୁର ଆଉ ସଂଗୀତରେ ବିହ୍ୱଳ ହୋଇ ପଡ଼ିଛନ୍ତି ସେତିକି ବେଳେ ଧାଂଗିଡ଼ି କଣ୍ଠରୁ ଝରି ପଡ଼ିଲା ତା'ର ଉତ୍ତର –

*"ଏ ସୁର କାଳକେ ବଡ଼ ବରଷା*
*ପାନି ମାରିଗଲା ଝାଇଁ*
*ଜଇପୁରିଆଣୀ ଝଟକ ତରା, ରଣ ବିଜୁଳି*
*କାକେ ଧରା ଦେବ ନାହିଁ।*
*ଗୁମୁଟା ଗୁମୁଟା ଖାରା,*
*ପୁରୁଷ ଜାତିକେ ପରତେ ନାଇଁ*
*ଯାର ସନେ ତାର ପରା।"*

ଠିକ୍ ବୁଝିପାରିଲେ ତ ?

ଧାଙ୍ଗଡ଼ା କହୁଛି "ମୋ' ପ୍ରେୟସୀ ଠିକ୍ ସେବତୀ ଫୁଲର ମାଳ ପରି। ସେ ପିନ୍ଧିଥିବା ନୋଥର ତଳକୁ ମୁକୁତା ଓ ଉପରେ ଝରା ଖଂଜା ହୋଇଛି। ମଝିରେ ବାଇଗଣ ମଂଜି ଭଳି କୁଟକମ ହୋଇଛି। ଦୂରରୁ ଦେଖିବାକୁ ଯିଏ ଏତେ ସୁନ୍ଦର, ଥରେ ତାକୁ ଚାଖି ଦେଖିଲେ କିମିତି ଲାଗନ୍ତା ? ଚନ୍ଦନ ବନର ସୁବାସରେ ଭ୍ରମର ଯେପରି ପାଗଳ ହୋଇଉଠେ - ଆସ ଆମେ କ୍ଷଣକ ପାଇଁ ସେଇମିତି ଝୁମିଜିବା।"

ଧାଂଗିଡ଼ି କଣ୍ଠର ଉତ୍ତର ବି ଠିକ୍ ବାଟୁଳି ବାଜିଲା ଭଳି।

"ଏ ବର୍ଷ ବହୁତ ବର୍ଷା, ଝାଇଁ ଝାଇଁ ପାଣି ମାରିଯାଉଛି। ଜୟପୁରିଆଣୀ ଝଟକ ତାରା ଓ ରଣ ବିଜୁଳି ଭଳି ସେ' ଏତେ ସହଜରେ କାହାକୁ ଧରା ଦେବନି। ଗୁଳୁଗୁଳିଆ ଖରା ପରି ପୁରୁଷମାନଙ୍କୁ କି ବିଶ୍ୱସ। ଯାହାକୁ ଦେଖିବେ ତା'ମନକୁ ପାଇଲା ଭଳି କଥା କହିବେ।

ଥରେ ଭାବି ଦେଖିଲେ, ଗୀତର ଭାଷା ଓ ଭାବ କେତେ ସୁନ୍ଦର ଓ କେତେ ସଂବେଦନଶୀଳ, ଶବ୍ଦ ଯୋଜନା କେତେ ଉଚ୍ଚକୋଟୀର, ଆଉ ଗୀତର ସୁର, ତାହା ତ ଭାଷାରେ ପ୍ରକାଶ କରାଯାଇ ପାରେନା; କେବଳ ମନରେ ହିଁ ଥାକିହୋଇ ରହିଯାଏ। ଯାହାକୁ ତଥା କଥିତ ସଭ୍ୟ ସମାଜ - ଅସଭ୍ୟ କହି ନାକ ଟେକେ, ସେମାନେ କିପରି ମନକୁ ମନ ଏତେ ସୁନ୍ଦର ପଦ ଯୋଡ଼ି ଭାବ ଗର୍ଭକ ସଙ୍ଗୀତ ଗାଇ ପାରନ୍ତି ?

ଯେତେବେଳେ ଚଇତର ଆକାଶରେ ଜହ୍ନ ଉଠେ, ମଳୟର କାଉଁରି ସ୍ପର୍ଶରେ ଲତାରେ ଲତାରେ ନେଥି ନେଥି ଫୁଲ ଫୁଟେ - ବନ ବିଥିକାର ମର୍ମର ଧ୍ୱନି ଧାଙ୍ଗଡ଼ା ଓ ଧାଙ୍ଗିଡ଼ିଙ୍କ ମନରେ ପୁଲକ ଜଗାଏ। ଜ୍ୟୋସ୍ନାଧୌତ ଆକାଶକୁ ଚାହିଁ ଧାଙ୍ଗଡ଼ା ଗୀତର ସୁର ମେଲି ଦିଏ,

*"ଅଂଧକ ଦକ ଦଳର ତଳର ଫୁଲର ଟାୟା*
*ତମର ଖୋଷାକେ ଟାୟା ଦେବି ରାଣୀ,*
*କବାଟ କାଢ଼ ରାଣୀ ପଦାକେ ଭାର।"*

ଧାଙ୍ଗିଡ଼ି ତାର ଉତ୍ତର ଦିଏ —

''ଚମଗ ଟାୟା ଚମ୍‌ଠି ର' ରଜା
ଶାମ ସୁନ୍ଦର କି ରଜା ଦାଣ୍ଡେ ଉଭାର
ଆମେ ନଥିଲେ କି ରଜା,
ତୋଟା ଅଂଧାର କି ରଜା ଜହ୍ନ ଉଜଲ।''

ଗୋଟି ଗୋଟି କରି ଧାଙ୍ଗଡ଼ା ଅନେକ ଉପହାର ଯାଚିଯାଏ, କିନ୍ତୁ ଧାଙ୍ଗିଡ଼ି ଜମା ଗ୍ରହଣ କରେନା। ଶୁଣୁଥିବା ସାଥିମାନେ ହସି ହସି ପ୍ରତିଯୋଗୀମାନଙ୍କୁ ଉତ୍ସାହ ଦିଅନ୍ତି। ବହୁତ ଡେରିରେ ଯେତେବେଳେ ଧାଙ୍ଗିଡ଼ିର ମନ ମାନେ ସେ' ଗାଇ ଉଠେ—

''ତମ୍‌କେ ଖାଇବାକେ ପାନ ଦେବି ରଜା,
ତମ୍‌କେ ପିଇବାକେ ପାନି ଦେବି ରଜା,
ତମ୍‌କେ ଶୋଇବାକେ ଖଟ ଦେବି ରଜା,
ଶାମ ସୁନ୍ଦର କି ରଜା ଦାଣ୍ଡେ ଉଭାର
ଆମେ ନଥିଲେ କି ରଜା
ତୋଟା ଅଂଧାର କି ରଜା ଜହ୍ନ ଉଜଲ।''

ଯଦି କୋୟା ନୃତ୍ୟ ବା ସଂଗୀତ ପ୍ରତି ଆପଣ ଆଗ୍ରହୀ, ତାହାହେଲେ କୋୟା ପଲ୍ଲୀରେ କୌଣସି ବାହାଘର ଦିନ ପହଞ୍ଚି ଯାଆନ୍ତୁ। ସେ ଦିନ କୋୟା ଯୁବତୀର ବେଶଭୂଷା ଓ ଅଳଂକାର ଦେଖିଲେ ଆପଣ ମନେ କରିବେ ଯେପରିକି ଦଳ ଦଳ ହୋଇ ପରଜାପତି ଘୁରି ବୁଲୁଛନ୍ତି। ସେଇମିତି କୋୟା ଯୁବକ ମୁଣ୍ଡରେ ଗୟଳ ଶିଙ୍ଗର ଟୋପି ନାଇଁ, ବିରାଟ ବିରାଟ ଢୋଲ ବଜାଇ ଯେପରି ନୃତ୍ୟ କରନ୍ତି, ଆପଣ ମନେ କରିବେ ଦଳେ ଉନ୍ମାଦ ଗୟଳ ସତେ ଅବା ବନ ଭୂଇଁକୁ ଦଳି ଚକଟି ମାଡ଼ି ଯାଉଛନ୍ତି।

କୋୟା ଯୁବତୀ ତ ବିଭିନ୍ନ ଅନୁଷ୍ଠାନରେ ବିଭିନ୍ନ ଗୀତ ଗାଏ। ଏଇ ଶୁଣନ୍ତୁ! ଜଣେ ନୂଆ ବୋହୂ ସାଙ୍ଗ ସାଥିଙ୍କ ଗହଣରେ ତା'ର ଶାଶୁର ଗଞ୍ଜଣା ବର୍ଣ୍ଣନା କରୁଛି।

ତୋଯେ ପୁଙ୍ଗାର୍ ପୋଯେ,
ନା' ପୋଯେ ମୁଣ୍ଡା କିଯିତା।
ନା' କାଡ଼୍‌ମାମ୍ ମେଲୋଲେ
ନା' ପୋଯେ ମୁଣ୍ଡା କିଯିତା,
ମାଇନା ପିଝଟେ ମୁଦ୍‌ପାଲ୍ ନନୀ
ମାଇନା ପିଟେ ମୁଦ୍‌ପାଲ
ମାରକା ମାଡ଼ା ମାମାଲ୍ ନନୀ
ମାର୍‌କା ମାଡ଼ା ମାମାଲ୍
ନା' ପୋଯେ ମୁଣ୍ଡା କିଯିତା।
କର୍ ପାଦ୍ ମିନ୍ଦେ ନନୀ
କର୍ ପାଦ୍ ମିନ୍ଦେ,
ଲୋନେ ଦୁଆର୍ ମିନ୍ଦେ ନନୀ
ଲୋନେ ଦୁଆର୍ ମିନ୍ଦେ,
ନା'କାଡ଼୍‌ମାମ୍ ମେଲୋଲେ,
ନା' ପୋଯେ ମୁଣ୍ଡାକିଯିତା।

ଡିମିରି ଫୁଲ ପରି ମୋ' ଶାଶୁ, ମୋ' ସହ କଳି କରୁଛି, ମୋ କରମ ଭଲ ନାହିଁ ମୋ ଶାଶୁ କଳି କରୁଛି। ମଇନା ପକ୍ଷ ପରି ବର, ଆମ୍ବ ଗଛ ପରି ଶଶୁର କବାଟ ଦୁଆର ଖଞ୍ଜା ଘର ଅଛି। ଘୁଷୁରୀ, କୁକୁଡ଼ା ଦଳ ଦଳ ଅଛି ହେଲେ କଣ ହେବ ମୋ' କରମ ସଳଖ ନୁହଁ ମୋ' ଶାଶୁ କଳି କରୁଛି।

ରାଜ ତନ୍ତ୍ରର ଅତ୍ୟାଚାର ଓ ଭବିଷତର ଆଶଂକାରେ ଭାଂଗି ପଡୁଥିବା ଜଣେ କନ୍ଧ ଯୁବକର ଗୀତ ଶୁଣନ୍ତୁ :—

ଏ ନା ତାକି ଇ ଲମ୍ବର, ପିଚୁ ଓଟାହି ମାନେଲି'
ରାଜାକି କୋଇ ଓଟାହି ମାନେ, ଏ ନାତାକି ଇ ଲମ୍ବର।
ମାଞ୍ଜିଙ୍ଗ୍ ଡକାତା ଚାରିପୁଞ୍ଜା ଲେବୁମାନେ
ହାଟ୍‌କୁ ହାଜାମୁ ଲାଡୁ ତିଞ୍ଜାମୁ, ଲାଙ୍ଗ ପିସନାହ।

ଏକି ହଇରାଣ, ବର୍ଷା ଆସିଛି, ରାଜାର ପାଇକ ଆସିଛି, ତାକୁ ଘର ଛାଡ଼ି ଯିବାକୁ ପଡ଼ିବ। ସେ' ଭାଙ୍ଗିପଡ଼ି ସ୍ତ୍ରୀକୁ ବୁଝାଉଛି। ମୁ ଚାଲି ଆସିବି ତୁ ଚିନ୍ତା କରନି। ଚାଉଳ ହାଣ୍ଡିରେ ଚାରି ଗଣ୍ଡା ପଇସା ରଖିଛି ହାଟକୁ ଯାଇ କିଛି କିଣି ଆଣି ଖାଇବୁ। କୁଆଡ଼େ ଯିବୁନୁ, ମୁଁ ଚାଲି ଆସିବି।

ସଞ୍ଜ ମାଡ଼ି ଆସୁଆସୁ ପରଜା ଯୁବକ ଖିଆପିଆ ସାରି ତା'ର ଡୁଙ୍ଗ୍ ଡୁଙ୍ଗାରେ ଯେତେବେଳେ ସୁର ଦିଏ, ଗୋଟି ଗୋଟି ହୋଇ ଧାଙ୍ଗିଡ଼ି ସବୁ ଜୁଟି ଯାଆନ୍ତି ଓ ଡୁଙ୍ଗ୍‌ଡୁଙ୍ଗାର ସୁର ସହ ତାଳ ରଖି ଗୀତ ଗାଆନ୍ତି ଓ ନାଚ କରନ୍ତି। ପରଜା ଯୁବତୀର ପାରଂପାରିକ ବେଶ ଓ ଜୁଡ଼ାବନ୍ଧା ପ୍ରକୃତରେ ଦର୍ଶକର ଦୃଷ୍ଟି ଆକର୍ଷଣ କରେ। ଯଦିଓ ପରଜାର ଗୀତରେ ଧାରାବାହିକ ଅର୍ଥ ନାହିଁ ତଥାପି ଛୋଟ ଛୋଟ ଗୀତଗୁଡ଼ିକ ପରଜାର ନାକରେ ଗୁଣୁ ଗୁଣୁ କରି ଗୁଞ୍ଜରି ଉଠେ। ତାହା ଶୁଣିବା ପାଇଁ ବେଶ୍ ଆମୋଦ ଦାୟକ ମନେ ହୁଏ

ଏନ୍‌କେ ନାଚୁ, ତେନ୍‌କେ ନାଚୁ
କେନ୍‌କେ ନାଚୁଲି
ତର ହାତ୍‌କେ ମୁଦି, ନାକ୍‌କେ ମୁଦି
ଦେବିରେ ଧାଙ୍ଗଡ଼ୀ
ଝିଲିମିଲି ଝିଲ୍‌ମିଲି।

ଧାଙ୍ଗିଡ଼ି ତାର ଉତ୍ତର ଦିଏ —

ତର ହାତର ମୁଦି ହାତେର, ନାକ୍‌ର ମୁଦି ନାକେର
ତକେ ନେବିରେ ଧାଙ୍ଗଡ଼ା
ଝିଲିମିଲି ଝିଲିମିଲି।

କିନ୍ତୁ କିଛି ଦିନ ହେଲା ଲକ୍ଷ୍ୟ କରାଯାଉଛି କୋରାପୁଟିଆର ଗୀତରେ ନୂତନ ସୁର - ନାଚରେ ନୂତନ ଛନ୍ଦ ଓ ବେଶଭୂଷାରେ ନୂତନ ପରିପାଟି। ନୂତନତ୍ୱ ପ୍ରତି ସମସ୍ତଙ୍କର ଯେଭଳି ଦୁର୍ବଳତା, ସେଥିରୁ ସେମାନେ ବି ବାଦଯିବେ କିପରି? ସେ ଯାହାହେଉ କୋରାପୁଟର ଲୋକଗୀତକୁ ଯଦି ସଂଗ୍ରହ କରି ରଖା ଯାଇପାରନ୍ତା, ତାହାହେଲେ ଓଡ଼ିଆ ସାହିତ୍ୟର ଗୋଟିଏ ଦିଗ ସମୃଦ୍ଧଶାଳୀ ହୋଇ ପାରନ୍ତା। ଏଥିରେ ସଂନ୍ଦେହର ଅବକାଶ ନାହିଁ।

# ସଉରା ଲିପିର ପ୍ରତିଷ୍ଠା ଓ ପ୍ରସାରରେ ମଙ୍ଗେଇ ଗମାଙ୍ଗଙ୍କ ଭୂମିକା

**ଡକ୍ଟର ଅଶୋକ କୁମାର ଦାସବାବୁ**

ରତ୍ନଗର୍ଭା ଓଡ଼ିଶାର କେତେ କଳାକର୍ମ ଦୃଷ୍ଟିର ଅନ୍ତରାଳରେ ରହିଯାଇଛି। ତଥାପି ଅନ୍ୱେଷଣର ନୂତନ ଅନିଷାରେ ତାହାର ପ୍ରନ୍ୱୋଦ୍ଧାର ନିମିତ୍ତ ଏବେବି ଗବେଷକମାନେ ଶତ ଚେଷ୍ଟିତ। କେତେ କବି, ଶିଳ୍ପୀ, ଦାର୍ଶନିକ, ଜନ ସେବକ ଏଇ ମାଟିରେ ଜନ୍ମଗ୍ରହଣ କରି ଇହଲୀଳା ସମ୍ବରଣ କରିଛନ୍ତି, ତା'ର ଇୟତ୍ତାନାହିଁ। କିନ୍ତୁ, ସେମାନଙ୍କର ସାଧନା ଚନ୍ଦ୍ର ଓ ତାରାଙ୍କ ପରି ସ୍ୱଚ୍ଛ ସୁନ୍ଦର ହୋଇ ପାରିଛି। ଏହିପରି ଅନେକ ପ୍ରତିଭା ଧର ବ୍ୟକ୍ତିଙ୍କ ମଧ୍ୟରେ ସଉରା ଲିପିର ଉଦ୍ଭାବକ ଶବର ପଣ୍ଡିତ ମଙ୍ଗେଇ ଗମାଙ୍ଗ ଅନ୍ୟତମ।

ଆଦିବାସୀ ବହୁଳ ଓଡ଼ିଶା ପ୍ରଦେଶରେ ୬୨ ପ୍ରକାର ଉପଜାତି ବସବାସ କରନ୍ତି। ସେମାନଙ୍କ ମଧ୍ୟରେ ସଉରା ଜାତି ଓଡ଼ିଶାର ସବୁ ଜିଲ୍ଲାରେ ଦେଖାଯା'ନ୍ତି। ମାତ୍ର ଗଂଜାମ ଜିଲ୍ଲାର ପାରଳାଖେମୁଣ୍ଡି ଓ କୋରାପୁଟ ଜିଲ୍ଲାର ଗୁଣୁପୁର ଅଞ୍ଚଳରେ ଏମାନେ ବହୁ ପରିମାଣରେ ବସବାସ କରନ୍ତି। ଏମାନଙ୍କର ଏକ ନିଜସ୍ୱ ଭାଷା ଅଛି, ଯାହା ଅଷ୍ଟୋ - ଏ ସିଆଟିକ ଭାଷା ଗୋଷ୍ଠୀର ଅନ୍ତର୍ଭୁକ୍ତ। ଏହି ଭାଷାର ଲିପି। ସୋରାଂ ସୋମ୍ପେଟ, ୧୯୩୬ ମସିହାରେ ଉଦ୍ଭାବିତ ହୋଇଛି। ସଉରା ସଂପ୍ରଦାୟର ଶିକ୍ଷିତ ମଙ୍ଗେଇ ଗମାଙ୍ଗ ଧର୍ମାନୁଚିନ୍ତା ଓ ଜାତୀୟତା ବୋଧରେ ଅନୁପ୍ରାଣିତ ହୋଇ ନିଜ ଗ୍ରାମ ମରିଚଗୁଡ଼ା ନିକଟସ୍ଥ ଏକ ଛୋଟ ଡଙ୍ଗରରେ ୨୧ ଦିନ ତପସ୍ୟା କରି ଶବରଙ୍କ ଦାନ ସ୍ୱରୂପ ସ୍ୱପ୍ନରେ ଏକ ଲିପିକୁ ଦେଖନ୍ତି। ନିଜ ସଉରା ଜାତିର ଅପହୃତ ଓ ଅନ୍ତର୍ହିତ ଦାରୁ ଦେବତା ପୁନଶ୍ଚ ଅକ୍ଷର ବ୍ରହ୍ମ ରୂପରେ ଦେଖାଦିଅନ୍ତି। ସଉରା ଧର୍ମଚକ୍ରର ଚବିଶ ପ୍ରଧାନ ଦେବତାଙ୍କର ପ୍ରତୀକାତ୍ମକ ଛବି ଅକ୍ଷର ସମନ୍ୱିତ ସେହି ଅକ୍ଷର ବ୍ରହ୍ମ ହୋଇଛି 'ସଉରା ଲିପି'। 'ସୋରାଂ ସୋମଥପେଂ' ବା ସଉରା ଧ୍ୱନି ପେଟିକା। ଯେଉଁ ପଥର ଦେହରେ ଲିପି ଦୃଶ୍ୟ ହୋଇଥିଲା, ତାହା ଏବେ ସଉରାମାନଙ୍କର ତୀର୍ଥ କ୍ଷେତ୍ର। ଅକ୍ଷର ବ୍ରହ୍ମଙ୍କ ମୂର୍ତ୍ତି ଭିତରେ ୨୪ଟି ବର୍ଣ୍ଣ ଓ ୧୨ ପର୍ଯ୍ୟନ୍ତ ସଂଖ୍ୟା ଏବଂ ଏକ ସଂକେତ ଶିକ୍ଷା ଓଡ଼ିଆ ଅକ୍ଷର ଓଁ ପରି - ଏକ ଆକୃତି ଭିତରେ ପରିକଳ୍ପିତ ହୋଇଛି। ଅକ୍ଷର ସବୁକୁ ଛୋଟ ଏକ ସିମେଣ୍ଟରେ ନିର୍ମିତ ମନ୍ଦିର ଭିତରେ ଘୋଡ଼ାଇ ରଖାଯାଇଛି। ସେଥିରେ ଛୋଟ ଛୋଟ ତିନୋଟି ଦ୍ୱାର ଅଛି। ସଉରାମାନେ କହନ୍ତି, ''ଏହି ଦ୍ୱାର ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ନାମରେ ପରିକଳ୍ପନା କରାଯାଇଛି।''

ମଂଗେଇଙ୍କ ଦ୍ୱାରା ଲିପି ଉଦ୍ଭାବିତ ହେବାର ଘଟଣା ସାରା ସଉରା ସମାଜରେ ଏକ ଆଲୋଡ଼ନ ସୃଷ୍ଟି କଲା। ଗାଁ ଗାଁ ବୁଲି ମଂଗେଇ ନିଜେ ଲୋକମାନଙ୍କୁ ସଚେତନ କରାଇବାରେ ଲାଗିଲେ। ଦିନ ରାତି ତାଙ୍କୁ କିଛି ଜଣା ପଡ଼ିଲା ନାହିଁ। କିନ୍ତୁ, ଅନ୍ଧକାରର ଗହ୍ୱରରେ ପଡ଼ିଥିବା ସଉରାମାନେ ହଠାତ୍ ଏହାକୁ ଗ୍ରହଣ କରି ପାରିଲେ ନାହିଁ। ଗୁଣୁପୁର ଠାରୁ ଗୁଡ଼ାରୀ ପର୍ଯ୍ୟନ୍ତ ବଡ଼ ବଡ଼ ଗମାଙ୍ଗମାନେ ଏହାକୁ ବିରୋଧ କଲେ। ତଥାପି ମଙ୍ଗେଇ ଭାଙ୍ଗି ନ ପଡ଼ି ନିଜ କର୍ତ୍ତବ୍ୟରେ ଲାଗି ପଡ଼ିଲେ। ନିଜ ଜଣା ଶୁଣା ଲୋକମାନଙ୍କ ପାଖରେ ପହଞ୍ଚି ଲିପି ନଥିବାରୁ ଏ ଭାଷା ଯେ ଅଚିରେ ଲୋପ ପାଇଯିବ - ଏଇ କଥାକୁ ସୂଚାଇ ଦେଲେ। ଧୀରେ ଧୀରେ ସଉରାମାନଙ୍କ ମଧ୍ୟରେ ଭଲ ମଣିଷ ହେବାର ଭାବନା ଜାଗ୍ରତ ହେଲା। ଲିପିକୁ କେନ୍ଦ୍ର କରି ଗୋଟିଏ ନୂତନ ଧର୍ମ ସଂପ୍ରଦାୟ ମଧ୍ୟ ଗଢ଼ି ଉଠିଲା; ଯାହାର ନାମ ହେଲା 'ମଭାର ବମ ଡମଡ୍ଡି'। ଏହି ଧର୍ମକୁ ଯେଉଁମାନେ ଗ୍ରହଣ କରି ନେଲେ, ସେମାନେ ବଳି ଓ ମଦକୁ ତ୍ୟାଗ କରି ବାକୁ ବାଧ୍ୟ ହେଲେ। ଗୋଟିଏ ଦିଗରେ ଏହା ସଉରାମାନଙ୍କର ଅର୍ଥନୈତିକ ଦିଗକୁ ସାହାଯ୍ୟ କଲାବେଳେ, ଅନ୍ୟ ଦିଗରେ ସେମାନଙ୍କ ମଧ୍ୟରେ ଉତ୍ତମ ମଣିଷ ହେବାର ଚେତନା ସୃଷ୍ଟିକଲା।

ପ୍ରଥମେ ପ୍ରଥମେ ମଂଗେଇ ଏହାକୁ ମୌଖିକ ଆକାରରେ ପ୍ରଚାର କରାଇଲେ। ତାଙ୍କ ଠାରୁ ଯେଉଁମାନେ ଦୀକ୍ଷା ଗ୍ରହଣ କରୁଥିଲେ, ସେମାନେ ତାଙ୍କର ଜୀବନକୁ ଶୃଙ୍ଖଳିତ କରି ଗଢ଼ିବାକୁ ଚେଷ୍ଟା କଲେ। ଉଦ୍ଭାବିତ ଏହି ଲିପି ଧର୍ମ ସହିତ ଜଡ଼ିତ ହୋଇ ଯିବାରୁ ଦିନକୁ ଦିନ ପ୍ରସାରିତ ହେବାରେ ଲାଗିଲା। 'ଦାରୁ ବ୍ରହ୍ମ' ଏବେ 'ଅକ୍ଷର ବ୍ରହ୍ମ' ରୂପରେ ପୁଣି ଫେରି ଆସିଛନ୍ତି ବୋଲି ସମସ୍ତଙ୍କର ବିଶ୍ୱାସ ହେଲା। ଏହାର ପ୍ରସାର ନିମିତ୍ତ ମଂଗେଇ ଦିନରାତି ଲାଗିଥା'ନ୍ତି। ୧୯୩୬ରୁ ୧୯୫୦-୫୧ ମସିହା ପର୍ଯ୍ୟନ୍ତ ମୌଖିକ ଭାବରେ ଏହାର ପ୍ରଚାର କାର୍ଯ୍ୟ ଚାଲୁ ରହିଲା। ୧୯୫୨ ମସିହା ଆଡ଼କୁ ମଂଗେଇ ନିଜେ ଛୋଟ ଛୋଟ ପକେଟ ଖାତାରେ ଲିପିକୁ ଲେଖି ପ୍ରଚାର କାର୍ଯ୍ୟ ଆରମ୍ଭ କଲେ। କିନ୍ତୁ ସବୁ ସଉରା ଭାଇମାନଙ୍କୁ ଏହିପରି ଲେଖି ଯୋଗାଇ ଦେବା ସମ୍ଭବପର ହେଲା ନାହିଁ। ତେଣୁ ଏହାର ସ୍ଥାୟୀ ପ୍ରତିକାର ପାଇଁ ସେ ଚେଷ୍ଟା କଲେ।

୧୯୬୫ରେ ମଂଗେଇ ଆନ୍ଧ୍ରପ୍ରଦେଶର ବିଜୟୱାଡ଼ାକୁ ଯାତ୍ରାକଲେ। ସେଠାରେ ଇଣ୍ଡର ପ୍ରେସ୍ ସହ ଯୋଗାଯୋଗ କଲେ। ପଥରରେ ଖୋଦେଇ ହୋଇ ପ୍ରଥମେ ଅକ୍ଷର ସବୁ ଛପା ହେଲା। କେବଳ ଅକ୍ଷରଗୁଡ଼ିକ ପ୍ରକାଶିତ ହେଲା। ମାତ୍ର ସେଥିରେ କେତୋଟି ଅକ୍ଷରର ତ୍ରୁଟି ରହିଗଲା। ତେଣୁ ମଂଗେଇ ବାଧ୍ୟ ହୋଇ ତାହାକୁ ବଦଳାଇବାକୁ ଚେଷ୍ଟା କଲେ। ଏହି

ସମୟରେ ବିଜୟୱାଡ଼ାର 'ସ୍ୱତନ୍ତ୍ର ଆର୍ଟ ପ୍ରେସ୍‌ରୁ' 'ସବ୍ରମ୍‌କ୍ଳାଇନମି' ନାମକ ସଉରା ଭାଷାଶିକ୍ଷା ପୁସ୍ତକ ପ୍ରକାଶିତ ହେଲା। ବାହାରୁ ପୁସ୍ତକ ପ୍ରକାଶନ କରିବା ଅପେକ୍ଷା ନିଜସ୍ୱ ପ୍ରେସ୍‌ଟିଏ ସ୍ଥାପନ କରି ପୁସ୍ତକ ପ୍ରକାଶନ କରିବାକୁ ମଂଗେଇଙ୍କର ଆଗ୍ରହ ହେଲା। ଏହି ସମୟରେ କେତେ ଜଣ ବଦାନ୍ୟ ବ୍ୟକ୍ତି ଆଗଭର ହୋଇ ବାହାରି ପଡ଼ିଲେ। ସେମାନେ ହେଲେ - ନୀଳାମ୍ବର ଶବର (ଘନାଦ୍ରି), ବିଶାଶବର (ଏଦ୍‌ଲସା), ଶୁକ୍ରୁ ଶବର (ବାମୁଣି ଡଙ୍ଗର), ନରସିଂହ ଶବର (ଡମ୍ବସରା), ଓ ପେଟାଶବର (ଡମ୍ବସରା) ଏମାନଙ୍କ ଠାରୁ ଆର୍ଥିକ ସାହାଯ୍ୟ ଲାଭ କରି ମଂଗେଇ ୧୯୬୬ରେ ଶ୍ରୀକାକୁଲମ୍ ଯାଇ ପେସ୍‌ଟିଏ ଯୋଗାଡ଼ କରିବାକୁ ଲାଗିଲେ। ଶେଷରେ "ରାମା ପ୍ରେସ୍'ରୁ ପୁରୁଣା ପେସ୍‌ଟିଏ କିଣାହେଲା। କିନ୍ତୁ ଏହି ସମୟରେ ଲାଇସେନ୍‌ସ ମିଳିଲା ନାହିଁ। ତଥାପି ମଂଗେଇ ଧୈର୍ଯ୍ୟ ହରାଇ ନାହାନ୍ତି। ପରେ ୧୯୭୨-୭୩ ଆଡ଼କୁ ଲାଇସେନ୍‌ସ ମିଳିଲା।

ଡମ୍ବସରା ଠାରେ ପ୍ରେସ୍ ବସାଇବାକୁ ପେଟାଶବର ନିଜର ଜମିଟିଏ ଦାନ କଲେ। ପ୍ରଥମେ ଅକ୍ଷର ସବୁ ଛାପା ହେଲା। ପ୍ରାଥମିକ ଶିକ୍ଷା ପୁସ୍ତକଠାରୁ ଆରମ୍ଭ କରି ଧର୍ମ ପୁସ୍ତକ, ଇତିହାସ ବହି ସବୁ ଛାପା ଚାଲିଲା। ମୋଟ ୨୩ ଖଣ୍ଡ ପୁସ୍ତକ ଛପା ହୋଇଛି। ସବୁ ଗ୍ରନ୍ଥର ଲେଖକ ନିଜେ ମଂଗେଇ। ପ୍ରକାଶିତ ଗ୍ରନ୍ଥ ସବୁ ବିନା ମୂଲ୍ୟରେ ସଉରାମାନଙ୍କ ମଧ୍ୟରେ ବିତରଣ କରାଗଲା। ନିଜ ଲିପି ମାଧ୍ୟମରେ ପୁସ୍ତକ ପ୍ରକାଶିତ ହେବାରୁ ସେମାନଙ୍କ ମଧ୍ୟରେ ନୂଆ ଭାବନା, ନୂଆ ଚେତନା ସୃଷ୍ଟି ହେଲା। ୧୯୭୬ ମସିହାରେ ପ୍ରଥମେ ମାରିଚଗୁଡ଼ା ଗ୍ରାମରେ ସଉରା ବିଦ୍ୟାଳୟ ପ୍ରତିଷ୍ଠା କରାଗଲା। ଏହାର ନାମ ରହିଥିଲା 'ମଭାର ବ୍ରମ ବିଜ୍ଞାନ ପ୍ରଚାର ଆଶ୍ରମ'। ପରେ ପରେ ଗାଁ ଗାଁରେ ଅନେକ ବିଦ୍ୟାଳୟସବୁ ଗଢ଼ି ଉଠିଲା। ଅନେକ ଶିକ୍ଷିତ ସଉରା ବ୍ୟକ୍ତି ସେହି ବିଦ୍ୟାଳୟମାନଙ୍କରେ ଅବୈତନିକ ଭାବେ ଶିକ୍ଷା ଦାନ କଲେ। ନିଜ ଜାତିର ଉନ୍ନତି ପାଇଁ ସମସ୍ତେ ଅଣ୍ଟା ଭିଡ଼ି ବାହାରି ଆସିଲେ। କେବଳ ଓଡ଼ିଶାରେ ନୁହେଁ ପଡ଼ୋଶୀ ଆନ୍ଧ୍ର ପ୍ରଦେଶର ଅନେକ ସ୍ଥାନରେ ମଧ୍ୟ ଏହି ବିଦ୍ୟାଳୟମାନ ପ୍ରତିଷ୍ଠା କରାଗଲା।

ଏହି ବିଦ୍ୟାଳୟଗୁଡ଼ିକରେ ନିର୍ଦ୍ଦିଷ୍ଟ ଶ୍ରେଣୀ ନାହିଁ। କେଉଁ ଶ୍ରେଣୀ ପାଇଁ କେଉଁ ପୁସ୍ତକ ଉଦ୍ଦିଷ୍ଟ; ତାହା ମଧ୍ୟ ଉଲ୍ଲେଖ କରାଯାଇ ନାହିଁ। କେବଳ ଗ୍ରନ୍ଥଶିକ୍ଷା, ନୀତି ଶିକ୍ଷା, ଗଣିତ, ବ୍ୟାକରଣ ପ୍ରଭୃତି ପୁସ୍ତକ ପଢ଼ାଯାଏ। ଶିକ୍ଷାର୍ଥୀମାନେ ଉତ୍ତୀର୍ଣ୍ଣ ହେଲା ପରେ 'ମଭାରବ୍ରମ ବିଜ୍ଞାନ ପ୍ରଚାର ଆଶ୍ରମର ସଭାପତି, ସଂପାଦକ ଓ ସେହି ବିଦ୍ୟାଳୟର ଶିକ୍ଷକଙ୍କ ଦସ୍ତଖତ୍ ଥାଇ ସାର୍ଟିଫିକେଟ ପ୍ରଦାନ କରାଯାଏ।

ମଙ୍ଗେଇ ଗମାଙ୍ଗ ଶିକ୍ଷିତ ଥିଲେ। ସଉରାମାନେ ସବୁଦିନ ଅବହେଳିତ ହୋଇ ନ ରହନ୍ତୁ; ଏଥିପାଇଁ ଲିପିକୁ ଏକ ନୂତନ ଧର୍ମ ସଂପ୍ରଦାୟରେ ପରିଣତ କରାଇ ଦେଇଛନ୍ତି ବୋଲି ଅନୁମାନ କରାଯାଇପାରେ। ଅଶିକ୍ଷିତ ସଉରାମାନଙ୍କ ମନରୁ ପରମ୍ପରା ଜନିତ ଅନ୍ଧବିଶ୍ୱାସକୁ ଦୂରେଇ ଦେବାପାଇଁ ଦିନରାତି ସଂଗ୍ରାମ କରିଛନ୍ତି। ଲୋକମାନଙ୍କ ସୁଖଦୁଃଖରେ ଭାଗୀ ହୋଇ ଲୋକମାନଙ୍କର ମନକୁ ଜୟ କରିଥିଲେ। ତାଙ୍କଠାରେ ଥିଲା ଜ୍ୟୋତିଷ ବିଦ୍ୟା ଓ ଦେଶୀ ଚିକିତ୍ସା ପ୍ରଣାଳୀର ମନ୍ତ୍ର। ଏହାହିଁ ତାଙ୍କ ଜନ ପ୍ରିୟତାର ମୁଖ୍ୟ କାରଣ। ବଣ ଜଙ୍ଗଲର ଗଛଲତା ଓ ଚେର ମୂଳରୁ ଔଷଧ ତିଆରି କରି ନାନା ପ୍ରକାର ଅସାଧ ରୋଗରୁ, ସେ ଲୋକମାନଙ୍କୁ ଉଦ୍ଧାର କରି ପାରିଥିଲେ। ପୁନଶ୍ଚ କେତେକ ସ୍ଥାନରେ ଝଡ଼ା ଫୁଙ୍କା କରି ଲୋକମାନଙ୍କ ମନରେ ବିଶ୍ୱାସ ଜନ୍ମାଇ ପାରିଥିଲେ। ଏହା ଦ୍ୱାରା ଲୋକେ ତାଙ୍କୁ ଅଧିକ ସମ୍ମାନ ଓ ଶ୍ରଦ୍ଧା କରିବାକୁ ଲାଗିଲେ।

ସଉରାମାନଙ୍କ ମଧ୍ୟରେ ଥିବା ବଳି ଓ ମଦ ପ୍ରଥାରେ ସେ ପୂର୍ଣ୍ଣଚ୍ଛେଦ ଟାଣିଦେଲେ। ନିଜ ସଂପ୍ରଦାୟର ଉନ୍ନତି ନିମିତ୍ତ ସେ ବଣ ପାହାଡ଼ ନଈନାଳ ଡେଇଁ ଗୋଟିଏ ଗାଁରୁ ଆଉ ଗୋଟିଏ ଗାଁକୁ ଲିପିର ପ୍ରଚାର ପାଇଁ ଆଗେଇ ଚାଲିଥିଲେ। ଯେଉଁଠି ସନ୍ଧ୍ୟା ହେଉଥିଲା, ସେଇଠି ରାତ୍ରି ଯାପନ କରୁଥିଲେ। ଯାହା ଘରେ ଯାହା ମିଳୁଥିଲା ତାକୁ ଖାଇ କାହା ଘରେ ଶୋଇ ପଡୁଥିଲେ, ତା'ର ଠିକଣା ନଥିଲା। ଶେଷରେ ସେ ସଉରା ଗୁରୁ ଭାବରେ ପରିଚିତ ହୋଇଗଲେ। ଯାହା ଘରେ ରହୁଥିଲେ କାଗଜ କଲମ ଧରି କିଛି ନା କିଛି ଲେଖି ବସୁଥିଲେ। ଏବେ ଅନେକ ଲୋକଙ୍କ ଘରେ ସେହି ପାଣ୍ଡୁଲିପିଗୁଡ଼ିକ ଦେଖିବାକୁ ମିଳୁଛି। ସବୁଥିରେ ଭରି ରହିଛି ନିଜ ସଉରା ଭାଇମାନଙ୍କ ପ୍ରତି ଉପଦେଶ।

ଗୁଣୁପୁର ଅଞ୍ଚଳର ସଉରାମାନଙ୍କ ଭିତରେ ସେ ଯେଉଁ ନୂତନ ସ୍ପନ୍ଦନ ଖେଳାଇ ଦେଇଛନ୍ତି, ସେଥିରୁ ମନେହୁଏ ସତେ ଯେମିତି ସେ ଥିଲେ ଦେବ ଦୂତ, ଯିଏ ଗୋଟିଏ ପତନ ମୁଖୀ ସମାଜକୁ ଉଦ୍ଧାର କରି ଯାଇଛନ୍ତି। ସେ ଆଜି ନାହାନ୍ତି ସତ; ମାତ୍ର ତାଙ୍କ ପ୍ରଦର୍ଶିତ ମାର୍ଗକୁ ଅନୁସରଣ କରି ଆଜି ଅନେକ ସଉରା ଶିକ୍ଷିତ ହୋଇ ବଳି ଓ ମଦକୁ ସଂପୂର୍ଣ୍ଣ ତ୍ୟାଗ କରି ସୁସ୍ଥ ସମାଜ ଓ ପରିବେଶ ସୃଷ୍ଟି କରି ପାରିଛନ୍ତି।

ସଉରା ଲିପିର ସ୍ରଷ୍ଟା ମଙ୍ଗେଇ ଗମାଙ୍ଗ ଜଣେ ଭାଷାବିତ୍ ନ ଥିଲେ। ଗୋଟିଏ ସାଧାରଣ ସଉରା ପରିବାରରେ ଜନ୍ମଗ୍ରହଣ କରି ସେ ଯେଉଁ ଅମୂଲ୍ୟ ସଂପଦ ନିଜ ଜାତି ପାଇଁ ଛାଡ଼ି ଯାଇଛନ୍ତି, ସେଥିପାଇଁ କାଳ ବକ୍ଷରେ ସେ ସ୍ମରଣୀୟ ହୋଇ ରହିବେ। ଅଳ୍ପ କେତେକ ତ୍ରୁଟି ବିଚ୍ୟୁତି ଏ ଲିପିରେ ରହିଛି। ତଥାପି ସଂପୂର୍ଣ୍ଣ ଧ୍ୱନିତାତ୍ତ୍ୱିକ ଦୃଷ୍ଟିକୋଣରୁ ଏହା ଅବୈଜ୍ଞାନିକ ନୁହେଁ। ଭାଷାବିତ୍ - ଡକ୍ଟର ଖଗେଶ୍ୱର ମହାପାତ୍ରଙ୍କ ଭାଷାରେ କହିବାକୁ ଗଲେ - "ଏହା କେବଳ ଏକ ଲିପି ନୁହେଁ - ଏହା ଏକାଧାରରେ ସୋରା ଗୋଷ୍ଠୀର ଆଧ୍ୟାତ୍ମିକ, ସାମାଜିକ ଓ ସାଂସ୍କୃତିକ ଚେତନାର ପ୍ରତୀକ।"


● **ଅଧ୍ୟାପକ, ଓଡ଼ିଆ ବିଭାଗ, ଇନ୍ଦ୍ରାବତୀ ପ୍ରଜେକ୍ଟ କଲେଜ, ଖାତିଗୁଡ଼ା/ନବରଙ୍ଗପୁର - ୭୬୪ ୦୮୫**

# "ମହୋପାଧ୍ୟାୟ ୰ ରାମନାଥ ନନ୍ଦଙ୍କ କାବ୍ୟ ପ୍ରତିଭା"

ଶ୍ରୀମତୀ କୃଷ୍ଣା କୁମାରୀ ନନ୍ଦ

"ତବ କୀର୍ତ୍ତି ଧନ୍ୟ ହେ ବିଦ୍ୟାଭୂଷଣ
ଶତ ଅର୍ଥ ଯଦି ସୁବିଦ୍ୟା ଭୂଷଣ।
ବାଣୀ ତବ ବଶୀ ଦର୍ଶିନୀ ସମାନ
ବିଳାସ ଲୀଳାରେ କରନ୍ତି କି ଗାନ॥

ସଂକ୍ଷିପ୍ତେ ବହୁତ ବିଷୟ ପୂରିତ
ଯାହା କଲ ଧନ୍ୟ ହେଲା ତ ଜୀବିତ।
ବିକ୍ରମ ଚରିତ ମରକତ ମଣି
ସ୍ୱର୍ଣ୍ଣାଧାରେ ତବ 'ଶତ ଅର୍ଥ' ଗଣି॥

ତବ ଲେଖନୀରେ ସୁମନେ ସୁମନ
ବରଷନ୍ତୁ ଏତେ ମୋର ନିବେଦନ।
ଦୂରେ ଥାଇ କରେ ବହୁ ନମସ୍କାର
ଏତିକି ମାତର ଭକ୍ତି ଉପହାର॥

ମହାମହୋପାଧ୍ୟାୟ ବିଦ୍ୟାଭୂଷଣ ପଣ୍ଡିତ ଶ୍ରୀ ରାମନାଥ ନନ୍ଦଶର୍ମାଙ୍କ ଶତାର୍ଥ ପାଣ୍ଡିତ୍ୟରେ ବିମୁଗ୍ଧ ହୋଇ ୧୯୩୩ ମସିହାରେ ଉତ୍କଳର ପ୍ରତିଷ୍ଠିତ ଜ୍ୟୋତିର୍ବିଦ ୰ ବାଇକୋଳି ମହାପାତ୍ର ଉପଯୁକ୍ତ ଅନାବିଳ ମତ ପ୍ରଦାନ କରିଛନ୍ତି। ପଣ୍ଡିତ ଶ୍ରୀ ରାମନାଥ ନନ୍ଦ ଶର୍ମା ନିଜ ଅଗାଧ ପାଣ୍ଡିତ୍ୟ ବଳରେ ଯେଉଁ ଅଭୂତପୂର୍ବ ସୃଷ୍ଟି କରିଯାଇଛନ୍ତି, ତାହା କେବଳ ଭାରତୀୟ ସାହିତ୍ୟରେ କାହିଁକି ବିଶ୍ୱ ସାହିତ୍ୟରେ ଅଦ୍ୱିତୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ। ଏଭଳି ବହୁ ପଣ୍ଡିତ ବହୁ ରାଜନୈତିକ ଓଡ଼ିଶାର ଭୂତପୂର୍ବ ଗଭର୍ଣ୍ଣର ବା କେନ୍ଦ୍ର ଅର୍ଥମନ୍ତ୍ରୀ ଶ୍ରୀ କୈଳାସନାଥ କାଟ୍‌ଜୁ, ପ୍ରଭୃତି ଜୟପୁର ଆସିଥିବା ସମୟେ ତାଙ୍କ ପାଣ୍ଡିତ୍ୟ ପ୍ରତିଭା ହୃଦୟଙ୍ଗମ କରି ମହାସଭାମାନଙ୍କରେ ଉଚ୍ଛ୍ୱସିତ ପ୍ରଶଂସାକରି କବିଙ୍କ ସମ୍ବନ୍ଧି ଜ୍ଞାପନ କରିଥିଲେ।

ଏହି ମହାନ୍ ଯୋଗଜନ୍ମାଙ୍କ ଆବିର୍ଭାବ ହୋଇଥିଲା ଏ ଗିରି କାନନ ପରିବେଷ୍ଟିତ ତତ୍କାଳୀନ ବିଶାଖପାଟଣା ଜିଲ୍ଲା ବା (ବର୍ତ୍ତମାନ କୋରାପୁଟ ଜିଲ୍ଲା)ର ଜୟପୁର ସହରରେ ୧୮୦୧ ଶତାବ୍ଦି ମାର୍ଗଶୀର କୃଷ୍ଣ ଦ୍ୱିତୀୟା ରବିବାର ବା (୧୮୭୯ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସରେ) ମହାନନ୍ଦଙ୍କ ପିତା ପ୍ରହରାଜ ସ୍ୱର୍ଗୀୟ ମାଧବ ନନ୍ଦଙ୍କ ଔରସରେ, ଜନନୀ ଗେଲମଣି ଦେବୀଙ୍କଠାରୁ ଜନ୍ମ ଗ୍ରହଣ କରିଥିଲେ। ଏ ମାଳ ଆଦିବାସୀ ବହୁଳ ଅଞ୍ଚଳରେ ଏଭଳି ଜଣେ ମହାମନୀଷୀ ଜନ୍ମଗ୍ରହଣ କରି ନିଜ ଲେଖନୀ ମାଧ୍ୟମରେ ଏ ସମଗ୍ର ବିଶ୍ୱ ଉପରେ ଏତାଦୃଶ ନବତତ୍ତ୍ୱ କାବ୍ୟ ପରିବେଷଣ କରିବେ, ଏହା ବୋଧେ ସେ ସମୟକୁ କେହି କଳ୍ପନା କରି ନଥିବେ।

ତୁଳସୀ ଦୁଇ ପତ୍ରରୁ ବାସିବା ପରି ବାଲ୍ୟକାଳରୁ ହିଁ ଏହି ଯୋଗଜନ୍ମାଙ୍କ କବି ପ୍ରତିଭାର ଆଭାସ ମିଳିଥିଲା, ଯେ କି ତାଙ୍କ ବାଲ୍ୟାବସ୍ଥା ଛ' ବର୍ଷ ବୟସରେ ସଂସ୍କୃତ ମହାନାଟକୀୟ'ର ଗୋଟିଏ ଶ୍ଳୋକକୁ ଶ୍ରୀମଦ୍ ହନୁମଦ୍ ଅଭିନୟରେ ଅବଲୟ ଦେଖାଇ ଉତ୍କଳ ଭାଷାରେ ଏ ଶ୍ଳୋକଟିକୁ ପ୍ରାଞ୍ଜଳ ଭାବରେ ସଭାରେ ବୁଝାଇ ଥିବାରୁ ତତ୍କାଳୀନ 'ରାଜ ମାତା' ମାଁ ଗୋସେଇଁ ତାଙ୍କୁ ପୁରସ୍କାର ସହିତ ପାଣ୍ଡିତ୍ୟ ସୁନାମ ଅର୍ଜନ କରିବ ବୋଲି ପ୍ରୋତ୍ସାହ ଦେଇଥିଲେ। ସେହି ଅମୃତମୟ କଲ୍ୟାଣ ତାଙ୍କ ଭବିଷ୍ୟତ ସାଧନ ଜୀବନର ପଥ ପ୍ରଦର୍ଶକ ହୋଇଥିଲା। ଏହି ସ୍ରଷ୍ଟାଙ୍କ ସୃଷ୍ଟି ମଧ୍ୟରେ ରାଜବଂଶାବଳୀ ଏବଂ ସେଥିର ବହୁ ଅର୍ଥ ସଂବଳିତ ଶ୍ଳେଷକାବ୍ୟ (୧) ଶତାର୍ଥ ପଦ୍ୟମ୍ (୨) ବିକ୍ରମ ପଞ୍ଚଶତୀ (୩) ଷଡ଼ାର୍ଥ ପ୍ରତିପାଦକ ତୀର୍ଥକାଷ୍ଟକମ୍ (୪) ଶୀତସୀତା ବଲ୍ଲଭର ଅନ୍ୱୟାର୍ଥ ପ୍ରକାଶିନୀ ବିଚିତ୍ରଟୀକା (୫) ବିକ୍ରମ ବର୍ଣ୍ଣମାଳା ଗ୍ରନ୍ଥଗୁଡ଼ିକ ପ୍ରକାଶିତ ହୋଇ ବହୁ ପଣ୍ଡିତଙ୍କ ଦ୍ୱାରା ପ୍ରଶଂସିତ ଏବଂ ସମାଜମାନ୍ୟତା ଲାଭ କରିଛି।

ଏତଦ୍‌ବ୍ୟତୀତ କାବ୍ୟ ନ୍ୟାୟମୟୂଖ, ବିବିଧ ଶାକ୍ତ ତନ୍ତ୍ର ସଂଗ୍ରହ, ସାମବେଦୀୟ ଉପନୟନ ପଦ୍ଧତି, ଦୁର୍ଗୋତ୍ସବପୂଜା ପଦ୍ଧତି ପ୍ରଭୃତି ସଂସ୍କୃତ କୃତିଗୁଡ଼ିକ ତାଳପତ୍ରାଦିରେ ଏ ପର୍ଯ୍ୟନ୍ତ ପ୍ରକାଶ ହୋଇ ନାହିଁ। ତାଙ୍କ ରଚିତ "ସର୍ବତୋଭଦ୍ରମଣ୍ଡଳ", ମହାଚକ୍ର ବନ୍ଧ, ଖଡ୍ଗାଦିବନ୍ଧ ଇତ୍ୟାଦି ଚିତ୍ରକାବ୍ୟଗୁଡ଼ିକରେ ଯେଉଁ ପରିଶୁଦ୍ଧ କାବ୍ୟଗନ୍ଧ ଦେଖାଇ ଯାଇଛନ୍ତି, ତାହା ଯେକୌଣସି କବିଙ୍କ ହୃଦୟସ୍ପର୍ଶୀ ହେବ। ତାଙ୍କର ନବ୍ୟକୃତି ପଣ୍ଡିତମାନଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲେ ମଧ୍ୟ, ଅପ୍ରକାଶିତ ବହୁକୃତି ଲୋକ ଲୋଚନ ଅନ୍ତରାଳରେ ରହି ଗିରି ମଲ୍ଲିକା ଭାବରେ ଫୁଟି ଉଠିଛି। ତାଙ୍କ ବିପୁଳ ସୃଷ୍ଟି ମଧ୍ୟରୁ ଯେଉଁ କେତେକ କୃତି ଲୋକଲୋଚନକୁ ଆସିଛି, ସେହି ଶକ୍ତି ବିଶ୍ୱବାସୀଙ୍କୁ ଚମତ୍କୃତ କରିଛି। ଏହି ଯୋଗଜନ୍ମାଙ୍କ ପ୍ରତିଭାରେ ମୁଗ୍ଧହୋଇ ପ୍ରଧାପକ ସାହିତ୍ୟ ବିଶାରଦ ୰ ହରିହର ନନ୍ଦଶର୍ମା (କବିଙ୍କ ବଂଶଧର ଏବଂ ୩ଟି ଶିଷ୍ୟ ତାଙ୍କୁ ପାର୍ବତୀସୁତ ଶ୍ରୀ ଗଣେଶଙ୍କ ଅଂଶାବତାର ଭାବେ ଭକ୍ତଭରା ନରପେକ୍ଷ ସ୍ତୁତି ଗାନ କରିଥିବା ନିମ୍ନ ଶ୍ଳୋକଟିରୁ ପ୍ରକାଶ ପାଏ।

"କିଂଦାୟଂ ଗିରିଜାସୁତଃ କ୍ଷିତିତଳେ ଶ୍ରୀ ରାମନାଥୋଜନି
ନୋଚେତ୍କୋ ଶତସଂଖ୍ୟକାର୍ଥ ଘଟିତଂ ପଦ୍ୟଂ ବିଧାତୁଂ କ୍ଷମଃ
ପାଣ୍ଡିତ୍ୟା ବିପୁଳସ୍ୟବା ପ୍ରସକ୍ତତାଦ୍ ଭାଷାସୁନାନାର୍ଥତା
କୋଽବା ଦୁଷ୍କର ବନ୍ଧ କାବ୍ୟଂ ରଚନୀ, କର୍ତ୍ତୁଂକୃତିଂ ପାରୟେତ୍।"

ଗୋଟିଏ ଶବ୍ଦରୁ ସେ ଶତାଧିକ ଅର୍ଥ ପ୍ରକାଶ କରିଛନ୍ତି। ନିମ୍ନୋକ୍ତ 'ଶତାର୍ଥ ପଦ୍ୟଂ' ଗ୍ରନ୍ଥରେ ସେ ଗୋଟିଏ ଶ୍ଳୋକକୁ ଶହେ

ପନ୍ଦର ପ୍ରକାର ଉତ୍କୃଷ୍ଟ ଅର୍ଥାବଳି ନିଷ୍ପନ୍ନକରି ସ୍ୱକୀୟ ଆଲୋକିତ ପ୍ରତିଭାର ପରିଚୟ ଦେଇଛନ୍ତି।

ଶତାର୍ଥ ପଦ୍ୟମ୍ –

"ଅନନ୍ତ ଗୋଭୃତି ବିସାର କଳ୍ପିତ
ପ୍ରକୃତ ତେଜୋଦଳ ବିକ୍ରମୋଦୟଃ
ଚିରଂ ବିଦଧ୍ୟାଦିହ ଲୋକ ପାଳକଃ
ସତିଂ ସବଂଶସ୍ଥ ସମୁଜ୍ଜ୍ୱଳ ଶ୍ରିୟଂ।"
(ଶ୍ଳୋକ ନଂ ୪୩୭ ରାଜବଂଶାବଳି)

ଏହି ଏକମାତ୍ର ଶ୍ଳୋକରେ ୧୧୫ (ଶହେ ପନ୍ଦର ପ୍ରକାର) ଅର୍ଥର ନିଜ ଦଶଦଟୀକାରେ ସେ ନବଗ୍ରହ, ଷଡ଼ଚକ୍ର, କୁଳକୁଣ୍ଡଳିନୀ ଯୋଗତତ୍ତ୍ୱ ପଞ୍ଚ ଦେବତା, ଗାୟତ୍ର୍ୟାଦି ପଞ୍ଚ ଶକ୍ତି ପ୍ରକୃତି ପୁରୁଷ, ଦଶଦିଗ୍‌ପାଳ, ଦଶାବତାର, ଦଶ ମହାବିଦ୍ୟା, ହନୁମାନ, ଧନ୍ୱନ୍ତରୀ, ଏପରିକି ଯାହାଙ୍କୁ ସେ ଇଚ୍ଛା କରିଛନ୍ତି, ତାଙ୍କୁ ଏହି ଅର୍ଥରେ ବର୍ଣ୍ଣନା କରିଛନ୍ତି। ଜୟପୁର ମହାରାଜ ସାହିତ୍ୟ ସମ୍ରାଟ ବିକ୍ରମଦେବଙ୍କୁ ମଧ ସେ ଅର୍ଥକରି ନିଜର ପାଣ୍ଡିତ୍ୟ ପ୍ରଦର୍ଶନ କରିଛନ୍ତି। ଏଣୁ ଜୟପୁର ମହାରାଜା ବିକ୍ରମଦେବ ଶ୍ରୀ ନନ୍ଦଶର୍ମା ଖାଲି କବି ନୁହନ୍ତି। କୌଣସି ଦିଦୀ ଲୋକାନ୍ତରରୁ ବୃହସ୍ପତିଙ୍କ ସଦୃଶ୍ୟ, ଏ କବିତ୍ୱ, ଅର୍ଥଶକ୍ତି ଦେଖାଇବାରେ ପରଂଗମତା ଲାଭ କରିଛନ୍ତି ବୋଲି ବହୁବାର ରାଜ ସଭାରେ ଘେରାଉ କରିଥିବା ବହୁ ଗଣ୍ୟମାନ୍ୟ ବ୍ୟକ୍ତି ଅନୁଭବ କରିଛନ୍ତି। ଏ ବିଶ୍ୱ ସମ୍ମାନିତ ତାର୍ଥ ପଦ୍ୟଟି ୧୯୩୨ ମସିହାରେ ଉତ୍କଳ ଲିପିରେ ପ୍ରକାଶ ପାଇବା ପ'ରେ ୬.୫.୧୯୩୩ ମସିହାରେ ଆନ୍ଧ୍ରଭାରତୀ ଏ ପ୍ରଥିତଯଶାଙ୍କୁ ବିନା ପରୀକ୍ଷାରେ, ଏ ଅପୂର୍ବ କୃତି ଶକ୍ତି ଦେଖି "ମହୋପାଧ୍ୟା" ଉପାଧି ପ୍ରଦାନ କରିଥିଲେ। ରାଜବଂଶାବଳି ଉପୋଦ୍ଘାତରେ କବିଙ୍କ ପାଣ୍ଡୁଲିପି ଦେଖି ବିମୁଗ୍ଧ ହୋଇ ଆନ୍ଧ୍ରର ବିଶିଷ୍ଟ କବି ମହମହୋପାଧ୍ୟା ୰ ସୁବ୍ବାରାଓ ଶାସ୍ତ୍ରୀ ମହୋଦୟ ଯଥାର୍ଥରେ ଦର୍ଶାଇଛନ୍ତି। ଅନନ୍ତ ଗୋଭୃତି ପଦ୍ୟରେ ବିଦ୍ୟାଭୂଷଣ କବି ଶ୍ରୀ ରାମନାଥନନ୍ଦ ଯେଉଁ ଅପୂର୍ବ ଚମତ୍କାର ଦେଖାଇଛନ୍ତି, ତାହା ପୃଥିବୀର ଅନ୍ୟ କୌଣସି ଭାଷାରେ ଏ ପର୍ଯ୍ୟନ୍ତ ସମ୍ଭବ ପର ହୋଇ ନାହିଁ। ବିଶ୍ୱ ସାହିତ୍ୟର ଏହା ଏକ ଅଦ୍ଭୁତ କୃତି, ଏହି ଧ୍ୱନି କାବ୍ୟରେ, ଶବ୍ଦାଳଙ୍କାର ଓ କବିଙ୍କ ବହୁଶାସ୍ତ୍ର ଦର୍ଶିତା ଏବଂ କବି ଶକ୍ତିର ଆଢ୍ୟତା ଛପଇଛି ହୁଏ। ଏଣୁ ସୂକ୍ଷ୍ମଦର୍ଶୀ ସହୃଦୟଙ୍କୁ ଏ କାବ୍ୟ ମନୋରମ ହେବ, ଏହା କବି ମୁକ୍ତ କଣ୍ଠରେ ଘୋଷଣା କରିଛନ୍ତି। ଏହା ତାଙ୍କ ଲିଖିତ ସଂସ୍କୃତ ଭାଷାର ଓଡ଼ିଆ ଭାବ ପ୍ରକାଶ ମାତ୍ର।

ବାସ୍ତବିକ 'ଶତାର୍ଥ ପଦ୍ୟ' ସାହିତ୍ୟ ଜଗତର ଏକ ଅନର୍ଘମଣି, ମହୋପାଧାୟ ଉପାଧି ପାଇଥିବା ପୂର୍ବରୁ କବି ଜୟପୁର ମହାରାଜ ୰ ବିକ୍ରମ ଦେବ ବର୍ମା K.C.I.E.ଙ୍କ ଦରବାରର ମୁଖ୍ୟ ପଣ୍ଡିତ ଭାବେ ନିଯୁକ୍ତି ପାଇଥିଲେ ଓ ବିଦ୍ୟାଭୂଷଣ ଉପାଧିରେ ଅଳଙ୍କୃତ ହୋଇଥିଲେ।

ଏହି ଯୋଗଜନ୍ମାନ୍ଧ କବି ପ୍ରତିଭାର ସ୍ଫୁରଣ ନିଘଞ୍ଚବନାନୀ ପରିବେଶିଷ୍ଟ କୋରାପୁଟ ଜିଲ୍ଲାସ୍ଥିତ ଶ୍ରୀ ଗୁପ୍ତେଶ୍ୱର ମହାଦେବଙ୍କ ଆଶୀର୍ବାଦରୁ ହୋଇଥିଲା। ଯୁବାବୟସରେ ସେ ସଂଭ୍ରାନ୍ତ ବିରାଟ ପରିବାର, ପ୍ରାୟ ୧ ହଜାର ଏକର ଜମିର ତତ୍କାଳିନ ଜମିଦାରିତ୍ୱ, ପିତାମାତା, ଭ୍ରାତା ତଥା ସ୍ୱନନ୍ଦାଗଢ଼ା ଅର୍ଦ୍ଧାଙ୍ଗିନୀଙ୍କ ତମାମ ହଠାତ୍ ତ୍ୟାଗକରି ବୃଦ୍ଧ ଦେବଙ୍କ ଭଳି ଗୁପ୍ତେଶ୍ୱର ଗିରିଗୁହାକୁ ତପସ୍ୟାକରି ବାହାରି ପଡ଼ିଥିଲେ ଓ ୨୧ ଦିନକାଳ ଶିବଙ୍କ ଆରାଧନାରେ 'ପୁରଶ୍ଚରଣ" ବିଧାନ ଅହୋରାତ୍ରି ବିଧିବଦ୍ଧ ଭାବେ ପାଳନ କରିଥିଲେ ଓ ଶେଷରେ ସ୍ୱପ୍ନରେ ଜଣେ ତାମ୍ରବର୍ଣ୍ଣୀ ସନ୍ୟାସଙ୍କୁ ଦେଖିଥିଲେ। ସନ୍ୟାସ ଜଣକ ଏ ସାଧକଙ୍କୁ ଗୋଟିଏ ଉତ୍ତମ ଶ୍ଳୋକ ପଚାରି ଥିଲେ ଏବଂ ଏ ଶ୍ଳୋକଟିକୁ ଶ୍ରୀନନ୍ଦଶର୍ମା ବ୍ରହ୍ମା, ବିଷ୍ଣୁ, ମହେଶଙ୍କ ଉଦ୍ଦେଶ୍ୟରେ ତିନୋଟି ଅର୍ଥକଲେ। ସନ୍ୟାସ ଜଣକ ସନ୍ତୁଷ୍ଟ ହୋଇ ପିଠିରେ ହାତ ମାରି 'ଚବାସ୍' କହିଥିଲେ ଓ ପ୍ରଶଂସାକରି ତୁମ ମନସ୍କାମନା ପୂର୍ଣ୍ଣ ହେବ, ତୁମେ ଅନେୟ କବିତ୍ୱ ପାଇବ କହି କଲ୍ୟାଣ କଲେ ଓ ଅନ୍ତର୍ଦ୍ଧ୍ୟାନ ହେଲେ। ଏ ସବୁ କବି ନିଜେ ସମୟେ ସମୟେ ପ୍ରକାଶ କରୁଥିଲେ, ଯାହା ଶୁଣିବା ଲୋକେ କହନ୍ତି। ସେ ଯେଉଁ ଶ୍ଳୋକଟି 'ଶ୍ରୀ ଈଶ୍ୱରଙ୍କଠାରୁ ଶୁଣିଥିଲେ, ତା ସଙ୍ଗେ ସଙ୍ଗେ କଣ୍ଠସ୍ଥ କଲେ। କିନ୍ତୁ, ଭାଗ୍ୟକୁ ସେ ନିଦ୍ରାଭିଭୂତ ହେଲେ ଓ ବ୍ରାହ୍ମ୍ୟମୁହୂର୍ତ୍ତରୁ ପୁଣି ଶ୍ଳୋକଟି ସ୍ମରଣ କରିବାରୁ ଆଉ ପଦେ ବି ସ୍ମରଣ ହେଲା ନାହିଁ; ଏସବୁ ଅଦ୍ଭୁତ ବିଡ଼ମ୍ବନା। ଏହା ପ'ରେ ସେ ଯଥା ସମୟରେ କର୍ମ ସମାପ୍ତକରି ଜୟପୁର ଫେରି ନିଜସ୍ୱକୀୟଙ୍କୁ ଭେଟି ପୁଣି ଗାର୍ହସ୍ଥ୍ୟ ଜୀବନ ଆରମ୍ଭ କଲେ।

କ୍ରମଶଃ ସେ ନିଜ ଶକ୍ତି ବଢ଼ିବାର ଅନୁଭବ କଲେ। ରାଜକୀୟ ସୁବିଧା ସୁଯୋଗ ପାଇ ସେ ବିଭିନ୍ନ ସମୟରେ ରାଜକର୍ମରୁ କାଶୀ ବାରଣାସୀ ପ୍ରଭୃତି ଯିବା ସୁବିଧା ପାଇଲେ। ସେ ବିଶିଷ୍ଟ ପଣ୍ଡିତମାନଙ୍କ ସହ କାଶୀ ପ୍ରଭୃତିରେ ମିଶି ଶ୍ରୀରାମଦାସ ଶାସ୍ତ୍ରୀଙ୍କଠାରୁ ସିଦ୍ଧାନ୍ତ କୌମୁଦୀ ତର୍କବାଗୀଶଙ୍କଠାରୁ ଦୁର୍ବୋଦ୍ଧ୍ୟ ନ୍ୟାୟଶାସ୍ତ୍ର ଏବଂ କୌଣସି "ଝା" ସିଦ୍ଧାନ୍ତିଙ୍କଠାରୁ ଜ୍ୟୋତିଷଶାସ୍ତ୍ର ଓ ଗଣିତ ଲୀଳାବତୀ ସ୍ୱତ୍ର ବିଷୟରେ ପାଣ୍ଡିତ୍ୟ ଲାଭ କରିଥିଲେ ଏବଂ ଜଣେ ମାତୃତୁଲ୍ୟା ସାଧିକାଙ୍କଠାରୁ ତନ୍ତ୍ରୋପାସନାଦିରେ ପାଣ୍ଡିତ୍ୟ ଲାଭ କରିଥିଲେ। କ୍ରମଶଃ ତାଙ୍କ ପ୍ରତିପତ୍ତି ଦାକ୍ଷିଣାତ୍ୟରେ ଏବଂ ବିଦ୍ୟାନଗରୀ ବାରାଣସୀରେ ମଧ ବ୍ୟାପିଲା 'ଅଟୋବଧାନୀ' ରୂପେ ଅନେକ ଥର ତାଙ୍କ ପ୍ରତିପତ୍ତି ଓ ପ୍ରତିଭାର ପରିଚୟ ସେ ରାଜ ସଭାରେ ଦେଖାଇଛନ୍ତି।

ଏ ମହାକବିଙ୍କ ନ୍ୟାୟଶାସ୍ତ୍ର ବ୍ୟାକରଣ, ଷଡ଼ ଦର୍ଶନ, ଶ୍ରୁତିସ୍ମୃତି, ଜ୍ୟୋତିର୍ବିଜ୍ଞାନ ରାଜନୀତି, ତନ୍ତ୍ରଶାସ୍ତ୍ର ଯୋଗସାଧନା ପ୍ରଭୃତିରେ ଅଗାଧ ପାଣ୍ଡିତ୍ୟଥିଲା ତାହା ତାଙ୍କ ସ୍ୱହସ୍ତ ଲିଖିତ ରାଜବଂଶାବଳିର ନିମ୍ନୋକ୍ତ ଶ୍ଳୋକରୁ ଜଣାପଡ଼େ –

"ନ୍ୟାୟ ବ୍ୟାକରଣୈକ ଦେଶ ନପୁଣଃ ବେଦାନ୍ତ ଧାହିତ୍ୟ ବିତ୍
ଜ୍ୟୋତିର୍ନୀତି, ସସାଂଖ୍ୟ ଯୋଗ ମନ୍ତିମାନ୍ ସାହିତ୍ର ତନ୍ତ୍ରାଶ୍ରମୀ
ଶୌତସ୍ମାର୍ତ୍ତକଥା ଯଥାର୍ଥ କଥକଂ ଶ୍ରୀ ରାମନାଥଂ କବିଃ।

କବି ଶାକ୍ତ ଧର୍ମାବଲମ୍ବୀ ଥିଲେ ଏବଂ ତାଙ୍କ ପ୍ରଧାନ ଆରାଧ୍ୟା ଥିଲେ, 'ଆଦୀଶକ୍ତି ଦୁର୍ଗା'। ଜ୍ୟୋତିଃ ଶାସ୍ତ୍ରରେ ମଧ କବିଙ୍କ ଅଗାଧ ପାଣ୍ଡିତ୍ୟ ଥିଲା ତାହା ତାଙ୍କ ଶତାର୍ଥ ପଦ୍ୟଟୀକା ମାଧ୍ୟମରେ ପ୍ରତିପାଦନ କରିଛନ୍ତି। ନିମ୍ନୋକ୍ତ ଶ୍ଳୋକରୁ ତାହା ପ୍ରତିପାଦନ –

''ମୁଖେ ନିବାସୀ ଖଳୁ ନାସ୍ୟ ପଣ୍ଡିତଃ ସଖାଚରାଜାଚରରେ ବୁଧାର୍ଚ୍ଚ ତଃ

ତଥାତିଦ୍ୱରେ ପଥ ମନ୍ଦଶତ୍ରବୋ କଦାପି ସିଂହାସନ ମସ୍ୟ ସୁସ୍ଥିରମ୍''

ସୁସ୍ଥିର ରାଜସିଂହାସନ ଭୋଗାର୍ଥ ପଣ୍ଡିତ ଜନଙ୍କୁ ନିକଟରେ ରଖି ନିଜର ଆତ୍ମୀୟପୁତ୍ର ହେଲେ ମଧ ସେ ଯଦି କ୍ରୁର କର୍ମା ହୁଏ, ତାଙ୍କୁ ଦୂରରେ ବୁଦ୍ଧିମାନଙ୍କ ଦାୟିତ୍ୱରେ ରଖିବ ଜ୍ଞାନୀ ଲୋକ ନିଜର ଶତ୍ରୁ ହୋଇଥିଲେ ମଧ, ସେ କାଳେ ଉପକାର ବି କରିବ, ଏଣୁ ତାଙ୍କୁ ବିନାଶ ନ କରି ରଖିଥିଲେ। ପ୍ରତ୍ୟେକ ରଚନାରୁ କବିଙ୍କ ପ୍ରତିଭାର ପରିଚୟ ମିଳିଥାଏ।

'ଆଲ୍ ପଞ୍ଚଦଶୀ ନାମକ' ଟୀକା କାବ୍ୟରେ –

'All is not gold that glitters''

ଏହି ଇଂରେଜୀ ପ୍ରବଚନଟିକୁ ଏସବୁ ସଂସ୍କୃତ ଶ୍ରୁତି ବାକ୍ୟରୁ ଅଭିନ୍ନ ବୋଲି ଶବ୍ଦର ଶ୍ରୁତିନିତୀତା ପ୍ରତିପାଦନ କରିଛନ୍ତି।

ଅର୍ଥାତ୍ - ଗୋଲଡ୍ - ଗାଂ ପୃଥିବ୍ୟାଂ ଲଡ୍ ତୀତି ଗୋଲଡ୍ = ସ୍ୱର୍ଣ୍ଣ ନଅଟତୀତି = ନାଟ୍, ଇନ୍ - ଶ୍ରୀ ଶକ୍ତି, ଆଲ୍‌ଆ ସର୍ବତୋଭାବେ ଲାତି, ଗୃହ୍ଣାତି, ଟିଟସ୍ = ଶ୍ଳୈଟାଳୟ ତୀତି ସ୍ଥିଟର ରଷ୍ - ଦେଦୀପ୍ୟତେ, ଦଟ୍ - ବିକଶିତଂ ଏଭଳି ଅର୍ଥକୁ ସମନ୍ୱିତ କରି ''ପ୍ରତ୍ୟେକ ଦେବୀ ପଥ ମାନ ବସ୍ତୁ ସ୍ୱର୍ଣ୍ଣ ନୁହେ'' ଏହି ପ୍ରକୃତ ଅର୍ଥ ସଂସ୍କୃତରେ ଦର୍ଶାଇଛନ୍ତି। ଏହି ବ୍ୟୁତ୍ପତ୍ତି ଏବଂ ଅର୍ଥ ସହୃଦୟ ମନୋରମତ ଲାଗି ଯଥାର୍ଥ ଯୁକ୍ତି ପ୍ରମାଣ ଦେଇ ପ୍ରାୟ ତିରିଶ ପୃଷ୍ଠା ବ୍ୟାପି ସଂସ୍କୃନିଟୀକା କରି ୧୫ ପ୍ରକାର ଅର୍ଥ କରିଛନ୍ତି। ସଂସ୍କୃତ ଭାଷା ଏବଂ ପାଣିନୀୟ ବ୍ୟାକରଣ, ଅମର କୋଷାଦିର ତାତ୍ପର୍ଯ୍ୟ ଶକ୍ତି ଦେଖାଇ ବିଶ୍ୱକୁ ନୂତନ ଦିଗ୍ ଦର୍ଶନ ଦେଇ କମ୍ପ୍ୟୁଟରରେ ଏ ଭାଷାର ପ୍ରୟୋଜନତା କେତେ, ତାହା ପ୍ରତିପାଦନ କରାଇ ଯାଇଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ।

ପାରଳା ଗଜପତି ମହାରାଜାଙ୍କ ସଭାପତିତ୍ୱରେ ୧୯୩୬ରେ ସିଂହଭୂମିରେ ହୋଇଥିବା ପଣ୍ଡିତ ସଭାର ପ୍ରସ୍ତାବ ଓ ପଣ୍ଡିତମାନଙ୍କ ବିଶେଷ ଅନୁରୋଧକ୍ରମେ 'ଶୀତ ସୀତା ବଲ୍ଲଭ' କାବ୍ୟର ଅନ୍ୱୟାର୍ଥ ପ୍ରକାଶିନୀ ଟୀକା କରି ଯାଇଛନ୍ତି। ତେଣୁ ଉକ୍ତ କାବ୍ୟର ଗୌରବ ବହୁ ଗୁଣରେ ବଢ଼ି ଯାଇଛି, ଏହା ତାଙ୍କ ଅମୂଲ୍ୟ ସହୃଦୟତା ତଥା ନିଷ୍ଠାପର ବାଣୀ ସେବାମୂଳକ ସମାନ ସେ ଦାଉ ପରିଚାୟକ।

ପଣ୍ଡିତ ଶ୍ରୀ ବିଶ୍ୱମ୍ଭର ନନ୍ଦଙ୍କଠାରୁ ମୟୂରଭଞ୍ଜ ନିବାସୀ ଶ୍ରୀ ଦୀନବନ୍ଧୁ ଭଞ୍ଜ ଶୀତସୀତା ବଲ୍ଲଭ ମହାକାବ୍ୟର ସର୍ବ ଉଲ୍ଲେଖି ଡକ୍ଟର ଶ୍ରୀ ଭଗବାନ ପଣ୍ଡାଙ୍କ ତତ୍ତ୍ୱାବଧାନରୁ ୧୯୯୨ ସାଲ ପ୍ରାନ୍ତକୁ ସଂସ୍କୃତରେ ପି.ଏଚ୍.ଡ଼ି. ଉପାଧି ଲାଭ କରିଥିବା ସୁଲଭର କଥା। ଏହି କବିଙ୍କ କାବ୍ୟ ବନ୍ଧାଦି ଚାତୁରୀରୁ ବହୁ ସଂଖ୍ୟକ ପଣ୍ଡିତ ତାଙ୍କ ପଥାବଲମ୍ବନରେ ପି.ଏଚ୍.ଡି. ହାସଲ କରିବେ, ଏହା କବି ନନ୍ଦ ମହୋଦୟଙ୍କ କାବ୍ୟ କୃତିରୁ ପ୍ରତୀତ ହୁଏ। ଦୁଃଖର ବିଷୟ ପାରିପାର୍ଶ୍ୱିକ ପରିସ୍ଥିତିରୁ ତାଙ୍କ କୃତିଗୁଡ଼ିକ ଅଦ୍ୟାବଧି ପୁନର୍ମୁଦ୍ରଣାଦି ହୋଇ ପାରି ନାହିଁ। ତେଣୁ ସଂପୂର୍ଣ୍ଣ ଲୋକ ଲୋଚନକୁ ଆସି ନାହିଁ। ଯଦି ସରକାରଙ୍କ ତରଫରୁ ଏ ଗ୍ରନ୍ଥଗୁଡ଼ିକର ପ୍ରକାଶ ଏବଂ ପୁନଃ ମୁଦ୍ରଣ ହୁଅନ୍ତା, ତାହା ଲୋକ ଗୋଚର ହୋଇ ପାରନ୍ତା। ଶୁଣାଯାଏ 'ଜର୍ମାନି' ପ୍ରଭୃତି ବିଦେଶ ବିଶ୍ୱବିଦ୍ୟାଳୟରେ ଏ କାବ୍ୟ କୃତି ଉପରେ ଗୁରୁତ୍ୱ ଦେଇ ବିଦ୍‌ବଦ୍ ମଣ୍ଡଳୀରେ ଚର୍ଚ୍ଚା ଚାଲିଛି। ଭଗବାନ କରନ୍ତୁ, ଏହି ଯୋଗଜନ୍ମା କବିଙ୍କ କାବ୍ୟରାଶି ସସ୍ନେହ ବିଦ୍ୱାନ ମଣ୍ଡଳିରେ ଆଦୃତ ହେଉ। ବିଦ୍ୟାଭୂଷଣଙ୍କ ମରଶରୀର ମାଟିରେ ଦବିଯାଇଛି, କିନ୍ତୁ ତାଙ୍କ ପ୍ରତିଭା, ପାଣ୍ଡିତ୍ୟ ତାଙ୍କୁ ଆଜି ମରଣର ବେଳାଭୂମିରେ କରିଛି ଅମର କାଳଜୟ।

● *ଅଧ୍ୟାପିକା ଓଡ଼ିଆ ବିଭାଗ, ସରକାରୀ ମହାବିଦ୍ୟାଳୟ ଭବାନୀପାଟଣା*



*ମାତୃ ଭୂମି ମାତୃଭାଷା ଭକତେ ଯତନା,*
*ସେବ ତାଙ୍କୁ ଭକ୍ତି ଭରେ ଚିରସ୍ଥ ରଚନା ॥''*

*ମଧୁ ସୂଦନ ରାଓ*

# କୋରାପୁଟର ପୁରାଣକାର ଦୀନବନ୍ଧୁ ସୋମନିସି

ରାଜେନ୍ଦ୍ର ପାଢ଼ୀ

"ବିପୁଳ ପ୍ରାକୃତିକ ସମ୍ପଦ ଭରା କୋରାପୁଟ - ଭୂଖଣ୍ଡ ଯେପରି ନୈସର୍ଗିକ ସୁଷମା ମଣ୍ଡିତ, ସେହିପରି ଏହାର ସାରସ୍ୱତ ଓ ସାଂସ୍କୃତିକ ବିଭବ ଐଶ୍ୱର୍ଯ୍ୟ ମଣ୍ଡିତ। ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିରୁ ବିଚାର କଲେ, ସମଗ୍ର ଭାରତ ସାହିତ୍ୟକୁ କୋରାପୁଟର ଅବଦାନ ଅତୁଳନୀୟ। ଏହି ଜିଲ୍ଲାର ଆଦିମ ଅଧିବାସୀଙ୍କ ଲୋକମୁଖରେ ପରମ୍ପରାକ୍ରମେ ପ୍ରଚଳିତ 'ଲୋକବେଦ'ରୁ ଆରମ୍ଭକରି ପୁରାଣ, କାବ୍ୟ, ନାଟକ, କ୍ଷୁଦ୍ର ଗଳ୍ପ ଓ ପ୍ରବନ୍ଧ ପ୍ରତ୍ୟେକଟି ବିଭାଗ ଏ ମାଟିର ସ୍ରଷ୍ଟାମାନଙ୍କ ସ୍ୱାକ୍ଷର ବହନ କରି ଅପୂର୍ବ ଗରିମାନ୍ୱିତ ଓ ମହିମାନ୍ୱିତ। ଲୋକ ସାହିତ୍ୟର ଗନ୍ତାଘର ଭାବେ ସୁବିଦିତ ଏ ମାଟିର ବିଦଗ୍ଧ ସାହିତ୍ୟ ସଂପଦର ପରିମାଣ କିଛି କମ୍ ନୁହେ। ଓଡ଼ିଆ ସାହିତ୍ୟର ପ୍ରତିଟି ଯୁଗରେ ଓ ପ୍ରତିଟି ବିଭାଗରେ ଏହି ଜିଲ୍ଲାର ପ୍ରତିଭାଧର ସ୍ରଷ୍ଟା ପ୍ରତିନିଧିତ୍ୱ କରି ଆସୁଥିବା ସାହିତ୍ୟର ଇତିହାସ ଅଧ୍ୟୟନରୁ ସ୍ପଷ୍ଟ ପ୍ରତୀୟମାନ ହୁଏ। ପ୍ରସ୍ତୁତ ପ୍ରବନ୍ଧରେ ଏହି ଜିଲ୍ଲାର କବି ଓ ପୁରାଣକାର ରୀତି ଯୁଗୀୟ ସାହିତ୍ୟର ପ୍ରତିନିଧି 'ଦୀନବନ୍ଧୁ ସୋମନିସି'ଙ୍କ କିଞ୍ଚିତ ପରିଚୟ ପ୍ରଦାନର ପ୍ରୟାସ କରାଯାଇଛି।

ପୁରାଣକାର ଦୀନବନ୍ଧୁ "ପତିଭକ୍ତ ପୁରାଣ" ନାମକ ତିରିଶି ଅଧ୍ୟାୟ ବିଶିଷ୍ଟ ଗ୍ରନ୍ଥଟିଏ ରଚନା କରି ଓଡ଼ିଆ ସାହିତ୍ୟରେ ସ୍ମରଣୀୟ ହୋଇ ରହିଛନ୍ତି। ତାଙ୍କ ରଚିତ ଅନ୍ୟ କୌଣସି ଗ୍ରନ୍ଥ ଏ ଯାବତ୍ ଲୋକ ଲୋଚନକୁ ଆସି ନାହିଁ। ଓଡ଼ିଆ ସାହିତ୍ୟର ବିଶିଷ୍ଟ ଆଲୋଚକ ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ ମହାଶୟ ପ୍ରଥମେ ଏହି ପୁରାଣଟିକୁ ଆଲୋଚନା କରି ଲୋକଲୋଚନକୁ ଆଣିଥିବାରୁ, ସେ ଏହି ଜାତିର ଧନ୍ୟବାଦାର୍ହ। ଜରଡ଼ା ଦୁର୍ଗର ରାଜମାତା ଶ୍ରୀମତୀ ସୀତାଦେବୀଙ୍କ ଆନୁକୂଲ୍ୟରୁ ପ୍ରାପ୍ତ ଉକ୍ତ ପୋଥିର ନକଲ ସଂଗ୍ରହ ପୂର୍ବ ବିସ୍ମୃତି ଗର୍ଭରୁ ଉଦ୍ଧାର କରିଛନ୍ତି।[୧]

ଏଣୁ ପରମପୂଜ୍ୟ ଡକ୍ଟର ଆଚାର୍ଯ୍ୟ ମହୋଦୟ ଏହି ପୁରାଣର ଆବିଷ୍କାରକ ଓ ପ୍ରଥମ ଆଲୋଚକ ଭାବେ ଗୌରବର ଅଧିକାରୀ। ଆଲୋଚ୍ୟ ପୁରାଣଟି ପତିଭକ୍ତା ପୁରାଣ ବା ଧର୍ମଜଗା ପୁରାଣ ନାମରେ ଓଡ଼ିଶାରେ ପରିଚିତ। ଲୋକକାହାଣୀ ସମୟକ୍ରମେ କିମ୍ବଦନ୍ତୀ ଓ ପୁରାଣର ରୂପ ନେଇ ଜନପ୍ରିୟତା ଲାଭ କରିଥାଏ। ଏହି ଧାରାରେ ଉକ୍ତ ପୁରାଣଟି ଲୋକ କଥାର ରୂପାନ୍ତରଣ ବୋଲି କହିଲେ ଭୁଲ ହେବ ନାହିଁ। କାରଣ ଆନ୍ଧ୍ରପ୍ରଦେଶର ଶ୍ରୀକାକୁଲମ୍, ବିଜୟନଗରମ୍ ଓ ଓଡ଼ିଶାର ଗଞ୍ଜାମ ଓ କୋରାପୁଟ ଜିଲ୍ଲାରେ ଯେଉଁ ସତୀଶିରୋମଣି ତ୍ରିପୁର ମୋହିନୀର ପତିଭକ୍ତି ମୂଳକ ଲୋକ କାହାଣୀଟି ପ୍ରଚଳିତ, ତାହାର ପଦ୍ୟରୂପ ହେଉଛି କବି ଦୀନବନ୍ଧୁଙ୍କ "ପତି ଭକ୍ତା ପୁରାଣ"। ଉଭୟ ଲୋକକଥା ଓ ପୁରାଣର କଥା ବସ୍ତୁ ସମାନ। ଆନ୍ଧ୍ର ପ୍ରଦେଶର ବୋରାକାଥା, ହରିକାଥା, ବୋଲେଲୁ ଆଟା ଆଦି ଲୋକ ନାଟ୍ୟରେ ଉକ୍ତ କାହାଣୀଟି ପରିବେଷିତ ହୋଇ ଜନପ୍ରିୟତା ହାସଲ କରିଛି। ପରବର୍ତ୍ତୀ କାଳରେ ତେଲୁଗୁ ଭାଷାରେ ଚଳଚ୍ଚିତ୍ର ନିର୍ମିତ ହୋଇ ବିଶେଷ ଆଦୃତ ହୋଇ ପାରିଛି। ଲୋକ ରତ୍ନ ଡକ୍ଟର କୁଞ୍ଜ ବିହାରୀ ଦାସ ଲୋକ କାହାଣୀକୁ ସାତ ଭାଗରେ ବିଭକ୍ତ କରିଛନ୍ତି। ଯଥା: ୧) ପୌରାଣିକ କଥା ୨) ଓଷାବ୍ରତକଥା ୩) ସନ୍ଥ ଓ ଭକ୍ତି କଥା ୪) କିମ୍ବଦନ୍ତୀ ୫) ସତ୍ୟନାରାୟଣ ପୂଜା କାହାଣୀ ୬) ମହାତ୍ମ୍ୟକଥା ୭) ଲୌକିକ କଥା।[୨]

ଆଲୋଚ୍ୟ ପୁରାଣଟିର କଥାବସ୍ତୁ ଉପରୋକ୍ତ ଧାରାରେ 'ଲୌକିକ କଥା' ପର୍ଯ୍ୟାୟଭୁକ୍ତ। "କଥା ବସ୍ତୁଟି ଅତି ରମଣୀୟ। ଏହା ଏକ ଲୋକକଥା ବୋଲି ଧାରଣା ହୁଏ।"[୩]

ପୁରାଣଟି ପ୍ରଥମେ ତେଲୁଗୁ ଭାଷାରେ ରଚିତ ହୋଇଥିଲା। ଏହାର ଛାୟାରେ କବି ଦୀନବନ୍ଧୁ ଓଡ଼ିଆ ଭାଷାରେ ରଚନା କରିଥିବା ସୂଚାଇ ଛନ୍ତି।

"ଏ ଗ୍ରନ୍ଥ ତେଲଙ୍ଗୀ ଭାଷାରେ। ଥିଲା ମୁଁ କୋଇଲି ଓଡ୍ରରେ॥"

କବିଙ୍କ ଜନ୍ମ ତେଲୁଗୁ ପ୍ରଭାବିତ ଅଞ୍ଚଳରେ ହୋଇଥିବାରୁ ତାଙ୍କର ତେଲୁଗୁ ଭାଷାରେ ଉତ୍ତମ ଜ୍ଞାନ ଥିଲା। ନିଜ ପରିଚୟ ପ୍ରଦାନ କରି କବି ସ୍ୱକୀୟ ପୁରାଣରେ ଲେଖିଛନ୍ତି :—

"ଏହାଙ୍କ ଦେଶ ଗୁଣପୁର ମଥୁରା କାମିଗୁଡ଼ାଠାର
କରଣ କୁଳେ ଜାତ ମୋର ମୋ ଇଷ୍ଟ ରାଧା ଦାମୋଦର।"

କବିଙ୍କ ଜନ୍ମ ଗୁଣପୁରର ମଥୁରା କାମିଗୁଡ଼ା ନିକଟବର୍ତ୍ତୀ ଡେରାପେଣ୍ଡ ଗ୍ରାମରେ ଏକ କରଣ ପରିବାରରେ। କବି ନିଜ ପିତାଙ୍କ ପରିଚୟ ପ୍ରଦାନ କରି ଭଣିତାରେ ଲେଖିଛନ୍ତି :

"ପରଶୁରାମ ସୋମନିସି ତା ସୁତ ଦୀନବନ୍ଧୁ ଭାଷି।"

କବିଙ୍କ ଜନ୍ମ ଓ ଗ୍ରନ୍ଥ ରଚନା କାଳ ସଂପର୍କରେ ପୁରାଣଟିରେ ସୂଚନା ପ୍ରଦାନ କରିଛନ୍ତି ଯେ :—

"ଶ୍ରୀ ନନ୍ଦପୁର ଦେଶପତି ବିକ୍ରମ ଦେବଙ୍କ ସନ୍ତତି
ଶ୍ରୀ ରାମଚନ୍ଦ୍ର ଦେବ ନାମ ନୃପ ସମୂହରେ ବିକ୍ଷମ
ଦୁନ୍ଦୁଭି ନାମେଣ ବରଷେ ଉତ୍ତରାୟଣ ଜ୍ୟେଷ୍ଠ ମାସେ
ବୃଷକୁ ପନ୍ଦର ଦିନରେ ଶୁଦ୍ଧ ଦ୍ୱିତୀୟା ଶୁକ୍ରବାରେ
ସ୍ୱରକୁ କର ପାଞ୍ଚଗୁଣ ତେତିକି ବୟସ ମୋ ଜାଣ।"

---

୧) ଡ଼ଃ ସୁଦର୍ଶନ ଆଚାର୍ଯ୍ୟ - କୋଣାର୍କ ୧ମ ବର୍ଷ - ୨ୟ ସଂଖ୍ୟା - ୧୯୫୮
୨) ଡ଼ଃ କୁଞ୍ଜ ବିହାରୀ ଦାସ - ଓଡ଼ିଆ ଲୋକ କାହାଣୀ - ୧୯୬୨ - ପୃ - ୨୯ ଓଡ଼ିଶା ସାହିତ୍ୟ ଏକାଡେମୀ - ଭୁବନେଶ୍ୱର
୩) ଡ଼ଃ ସୁଦର୍ଶନ ଆଚାର୍ଯ୍ୟ - କୋଣାର୍କ - ୧ମ ବର୍ଷ - ୨ୟ ସଂଖ୍ୟା - ୧୯୫୮

କବିଙ୍କ ପ୍ରଦତ୍ତ ଦୁନ୍ଦିଭି ନାମକ ସମ୍ପୁଟର, ''ସ୍ୱରକୁ କର ପାଞ୍ଚଗୁଣ'' ଓ ନନ୍ଦପୁର ରାଜବଂଶାବଳୀକୁ ଆଧାରକରି ଆଲୋଚକ ଡଃ ଆଚାର୍ଯ୍ୟ ମହାଶୟଙ୍କ ନିରୂପଣ ଅନୁଯାୟୀ କବି ଦୀନବନ୍ଧୁ ଜୟପୁର ରାଜା ଦ୍ୱିତୀୟ ରାମଚନ୍ଦ୍ର ଦେବ (୧୭୮୧-୧୮୨୫)ଙ୍କ ରାଜତ୍ୱ କାଳରେ ଜୀବିତ ଥିଲେ। କବିଙ୍କ ଜନ୍ମ ୧୭୨୫ରେ ଓ ଗ୍ରନ୍ଥ ରଚନା ସମୟ ୧୭୯୦। ସେ ୬୫ ବର୍ଷ ବୟସରେ ଗ୍ରନ୍ଥ ରଚନା କରିଥିବା ''ସ୍ୱରକୁ କର ପାଞ୍ଚଗୁଣ'' (ସ୍ୱର ସଂଖ୍ୟା - ୧୩ର ୫ ଗୁଣ ୧୩x୫ = ୬୫) ବର୍ଣ୍ଣନାରୁ ଜଣାଯାଏ।[୪] କିନ୍ତୁ, ଅନ୍ୟ ଜଣେ ଆଲୋଚକ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ରଙ୍କ ମତରେ ଖ୍ରୀ. ୧୮୦୨ରେ ଗ୍ରନ୍ଥ ରଚିତ ହେଲା ବେଳକୁ କବିଙ୍କ ବୟସ ୩୫ ବର୍ଷ, ତେଣୁ କବିଙ୍କ ଜନ୍ମ ୧୭୬୭ ଖ୍ରୀଷ୍ଟାବ୍ଦରେ''।[୫] ଶ୍ରୀ ମିଶ୍ରଙ୍କ ଯୁକ୍ତି ହେଲା, କବି ଯୌବନାବସ୍ଥାରେ ପୁରାଣଟି ରଚନା କରିଥିବାରୁ ନିଜକୁ ବାଳୁତ, ଅଜ୍ଞାନ ଅନଭିଜ୍ଞ ବୋଲି, ପରିଚୟ ଦେଇଛନ୍ତି। କିନ୍ତୁ, ଏପରି ବର୍ଣ୍ଣନା ଆଦିକବି ସାରଳାଦାସଙ୍କ ସମେତ ସମସ୍ତ କବିଙ୍କ ରଚନା ଆମେ ପାଉଁ। ନିଜକୁ ଅଜ୍ଞାନୀ, ବାଳୁତ, ନିରକ୍ଷର, ମୂର୍ଖ, ଅପଣ୍ଡିତ ଭାବେ ପରିଚୟ ଦେବା ବିନମ୍ରତାର ସୂଚନା ମାତ୍ର। ଏହି ପରମ୍ପରାର ଅନୁସରଣରେ କବି ଦୀନବନ୍ଧୁ ଉପରୋକ୍ତ ବର୍ଣ୍ଣନା କରିଥିବା ମନେ ହୁଏ। କବି ବାର୍ଦ୍ଧକ୍ୟରେ ଏହି ପୁରାଣଟି ରଚନା କରିଥିବା ନିମ୍ନ ପଂକ୍ତିରୁ ସୂଚନା ମିଳେ :

''ବହୁତ ଦିନ ଏଥି ଧାଡ଼ି           ହୋଇ କଷ୍ଟକର ଅଛି ଛାଡ଼ି।''

କବି ତରୁଣ ବୟସରେ ନିଜ ପ୍ରାଣପ୍ରିୟା ପତ୍ନୀକୁ ହରାଇ ଦୁଃଖରେ ମର୍ମାହତ ହୋଇଥିଲେ। କବିଙ୍କ ''ତରୁଣ କାଳରେ ତରୁଣୀ/ହାତକୁ କଲା କୁଶ ପାଣି।'' ପଂକ୍ତିରୁ ସୁସ୍ପଷ୍ଟ।

ପୁରାଣଟିର କଥାବସ୍ତୁ ଅତ୍ୟନ୍ତ କରୁଣ ରସାତ୍ମକ। କବିଙ୍କ ସହଜ ଓ ସୁବୋଧ ଚରିତ ବର୍ଣ୍ଣନା, ସୁମଧୁର ଭାଷା ପୁରାଣଟିକୁ ସୁଶ୍ରାବ୍ୟ ଓ ସୁପାଠ୍ୟ କରି ତୋଳି ପାରିଛି। ସଂକ୍ଷେପରେ ବିଷୟ ବସ୍ତୁଟି ହେଲା; ଜମ୍ବୁ ଦ୍ୱୀପର କାଶ୍ମୀର ପ୍ରଦେଶରେ କନକ ନଗରର ରାଜା ଧର୍ମାଙ୍ଗଦ ଥିଲେ ଅତ୍ୟନ୍ତ ଦୟାଳୁ ଓ ପ୍ରଜାନୁରଞ୍ଜକ। ସକଳ ପ୍ରାଚୁର୍ଯ୍ୟ ମଧ୍ୟରେ ନିଃ-ସନ୍ତାନ ହେତୁ ଅତି ଦୁଃଖରେ କାଳାତିପାତ କରୁଥା'ନ୍ତି। ଏହିପରି କେତେଦିନ ପରେ ବାର୍ଦ୍ଧକ୍ୟ ଅବସ୍ଥାରେ ତାଙ୍କର ସନ୍ତାନଟିଏ ଜନ୍ମ ହେଲା। ଦୈବଯୋଗକୁ ସନ୍ତାନଟି ସର୍ପାକୃତି ଥିଲା। ରାଜାରାଣୀଙ୍କ ଦୁଃଖ ଆହୁରି ବଢ଼ିଗଲା। କିନ୍ତୁ, ମନ୍ତ୍ରୀଙ୍କ ସାନ୍ତ୍ୱନାରେ ସନ୍ତାନ ଜନ୍ମର ଉତ୍ସବ ପାଳନ ପାଇଁ ରାଜ୍ୟସାରା ଆୟୋଜନ କରାଗଲା। ମନ ମଧ୍ୟରେ ଅକୁହା ଦୁଃଖ ମର୍ମାହତ କରୁଥାଏ। ଏପରି ଦିନପରେ ଦିନ ଗଡ଼ି ଚାଲିଲା। ସନ୍ତାନର ବିବାହ ଯୋଗ୍ୟ ବୟସ ହେବାରୁ କନ୍ୟା ଅନ୍ୱେଷଣରେ ରାଜ ପୁରୋହିତଙ୍କୁ ଅନ୍ୟାନ୍ୟ ଦେଶକୁ ପ୍ରେରଣ କରାଗଲା ଓ ବିଭିନ୍ନ ଦେଶରୁ ମଧ୍ୟ ବିବାହ ପ୍ରସ୍ତାବ ମାନ ଆଗତ ହେଲା। ପରିଶେଷରେ ମହାରାଷ୍ଟ୍ରର ମାଣିକପୁର ରାଜା ରତ୍ନାଙ୍ଗଦଙ୍କ କନ୍ୟା 'ତ୍ରିପୁର ମୋହିନୀ' ପାଇଁ ପ୍ରସ୍ତାବଟି ଆଗତ କରାଗଲା। ସେ କନକ ନଗରକୁ ନିଜ ରାଜ ପୁରୋହିତଙ୍କୁ ବର ଦେଖା ପାଇଁ ପ୍ରେରଣ କଲେ। ମନ୍ତ୍ରୀଙ୍କ ପୁତ୍ରକୁ ରାଜପୁତ୍ର ଭାବେ ଦେଖାଇ, ଏକ ଚୁକ୍ତି ପ୍ରକାରେ ବିବାହ ସ୍ଥିର କରାଗଲା। ଚୁକ୍ତିଟି ହେଲା; ରାଜବଂଶ ପରମ୍ପରା ଅନୁଯାୟୀ କନ୍ୟାକୁ ପ୍ରଥମେ 'ପାଟଖଣ୍ଡା' ସହିତ ବରପିତା ଗୃହରେ ବିବାହ କରାଯିବ ଓ ପ'ରେ ରାଜ ନଅରରେ ଅନ୍ୟାନ୍ୟ କାର୍ଯ୍ୟ ସମ୍ପର୍ଣ୍ଣ ହେବ। ଚୁକ୍ତି ଅନୁଯାୟୀ ବିବାହ କାର୍ଯ୍ୟ ଯଥାରୀତି ସମ୍ପର୍ଣ୍ଣ ହେଲା। ଅପରୂପା ସୁନ୍ଦରୀ ତ୍ରିପୁର ମୋହିନୀ ନିଜ ପତିର ମୁଖ ନ ଦେଖି ପତିବିରହରେ କିଛିଦିନ ଦୁଃଖରେ କଟାଇଲା। ଏହି ଦୁଃଖ ସହି ନ ପାରି ଦିନେ ନିଜ ଶାଶୁକୁ ନିଜପତି ସଂପର୍କରେ ପଚାରି ଯାହା ଶୁଣିଲା, ସେଥିରେ ସେ ମୂର୍ଚ୍ଛାଗତ ହେଲା। ସେ କୌଣସି ଉପାୟ ନ ପାଇ ପରିଶେଷରେ ନିଜ ପତିକୁ ଧରି ତୀର୍ଥାଟନ ପାଇଁ ମନସ୍ଥ କଲା। ଗୁରୁଜନମାନେ ନିଜ ଭୁଲ ପାଇଁ ଲଜ୍ୟାରେ ତାକୁ ବାରଣ କଲେ ନାହିଁ। ଏକ କାଷ୍ଠ ପେଟିକାରେ ସର୍ପାକୃତି ସ୍ୱାମୀକୁ ରଖି ନିଜ ମୁଣ୍ଡରେ ଧରି ସକଳ ତୀର୍ଥ ସ୍ଥାନ, ନଦନଦୀ ଭ୍ରମଣ କରି ନିଜ ପତିର ମାନବ ଶରୀର ପାଇଁ ଆକୁଳ ପ୍ରାର୍ଥନା କଲା। ଅନେକ ଦିନ ବୁଲିବୁଲି ରାମେଶ୍ୱରରେ ଯାଇ ପହଞ୍ଚିଲା। ନିଜ ଦୃଢ଼ ସଂକଳ୍ପରେ ଅଟଳ ରହି ସେ ଭଗବଦ୍ ଆରାଧନାରେ କିଛି ସୁଫଳ ନ ପାଇ ଶେଷରେ ତୀର୍ଥ ଜଳରେ ପ୍ରାଣ ବିସର୍ଜନ ପାଇଁ ଉଦ୍ୟତ ହୁଅନ୍ତେ, ଶୂନ୍ୟ ବାଣୀ ହେଲା ଯେ, ''ସେ ପତିକୁ ତୀର୍ଥ ଜଳରେ ସ୍ନାନ କରାଇଲେ ମାନବ ଦେହ ଧାରଣ କରିବେ।'' ପତିକୁ ପବିତ୍ର ତୀର୍ଥ ଜଳରେ ସ୍ନାନ କରାଇବା ମାତ୍ରେ ଦିବ୍ୟ ମାନବ ଦେହ ଧାରଣ କଲେ। ଉପସ୍ଥିତ ଲୋକମାନେ ଏହି ଅଲୌକିକ ଦୃଶ୍ୟ ଦେଖି ତ୍ରିପୁର ମୋହିନୀର ପତିଭକ୍ତି ଓ ସତୀତ୍ୱ ପାଇଁ ଧନ୍ୟ ଧନ୍ୟ କଲେ। ଦୁହେଁ ପରମ ଆନନ୍ଦରେ ନିଜ ଦେଶକୁ ଫେରିଲେ। କିନ୍ତୁ, ପୁତ୍ରବଧୂ ପ୍ରତି ସନ୍ଦେହ କରି ଧର୍ମାଙ୍ଗଦ ଦିବ୍ୟ ପୁରୁଷଟିକୁ ନିଜ ପୁତ୍ର ବୋଲି ବିଶ୍ୱାସ ନ କରିବାରୁ ଶୂନ୍ୟ ବାଣୀ ଦ୍ୱାରା ସନ୍ଦେହ ମୋଚନ ହେଲା। ଏହାପରେ ପତିପତ୍ନୀ ଦୁହେଁ ଚିତ୍ରାଙ୍ଗଦ ଓ ସତ୍ୟବତୀ ନାମରେ ମାଣିକ୍ୟ ପୁରର ରାଜାରାଣୀ ଭାବେ ସୁଖରେ ରାଜ୍ୟ ଶାସନ କଲେ।

ଉକ୍ତ ପୁରାଣଟି ନବାକ୍ଷରୀବୃତ୍ତ ବା ଭାଗବତ ବାଣୀରେ ରଚିତ। ଏଥିରେ ଯେଉଁ ସଂଧ୍ୟା, ପ୍ରଭାତ, ଆଦି ଋତୁବର୍ଣ୍ଣନା, ନାରୀରୂପ ବର୍ଣ୍ଣନା, ନଗର ବର୍ଣ୍ଣନା ରହିଛି, ରୀତି ଯୁଗୀୟ ପରମ୍ପରାର ପ୍ରଭାବ ନିଶ୍ଚୟ। ବିଶେଷତଃ ଉଞ୍ଜୀୟ କାବ୍ୟ କଳାର ପ୍ରଭାବ ପରିଦୃଷ୍ଟ। କବିଙ୍କ ପ୍ରାଚୀନ କାବ୍ୟ ପୁରାଣାଦିରେ ପ୍ରବେଶ ରହିଥିଲା। ତାଙ୍କ ପୁରାଣ ପାଠ କଲେ ଆମେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅତିବଡ଼ି ଜଗନ୍ନାଥ ଦାସ ଆଦି କବିଙ୍କ ଦ୍ୱାରା ବିଶେଷ ଭାବେ ପ୍ରଭାବିତ ହୋଇଥିବା ଲକ୍ଷ୍ୟ କରିପାରିବା। ଉଭୟ ପାଣ୍ଡିତ୍ୟ ପୂର୍ଣ୍ଣଭାଷା ଓ ଗ୍ରାମ୍ୟଭାଷା ଅନୁପ୍ରାସ, ଅଳଙ୍କାରର ପ୍ରୟୋଗ, ସୁସ୍ଥ ଦାମ୍ପତ୍ୟ ଜୀବନ ନିମନ୍ତେ ବହୁମୂଲ୍ୟ ଉପଦେଶାତ୍ମକ ସୁଭାଷିତାବଳୀ ହେତୁ ଏହି ପୁରାଣଟି ଓଡ଼ିଶାର ଶିକ୍ଷିତ ଓ ଅଶିକ୍ଷିତମାନଙ୍କ ଦ୍ୱାରା ବିଶେଷ ଆଦୃତ ହୋଇ ପାରିଛି। ଏହା କାବ୍ୟ ଧର୍ମୀ ହେଲେ ହେଁ ପୁରାଣର ଚରିତ ଓ ମହାତ୍ମ୍ୟ ରହି ଥିବାରୁ ଓଡ଼ିଆ ପୁରାଣ ସାହିତ୍ୟକୁ କବି ଦୀନବନ୍ଧୁଙ୍କ ଅବଦାନ ଅବିସ୍ମରଣୀୟ ଓ ଅତୁଳନୀୟ। କବିଙ୍କ ପାଣ୍ଡିତ୍ୟ ଓ କବିତ୍ୱ ଆଲୋଚ୍ୟ ପୁରାଣରେ ଯାହା ଉପଲବ୍ଧ, ଅନୁମିତ ହୁଏ ଯେ, କବି ଆହୁରି ବହୁ କୃତି ରଚନା କରିଥିବେ। ଏ ଦିଗରେ ଗବେଷକମାନେ ଯତ୍ନଶୀଳ ହେଲେ ବହୁ ଅମୂଲ୍ୟ ଗ୍ରନ୍ଥ ଓଡ଼ିଆ ବାଣୀ ଭଣ୍ଡାରକୁ ସମୃଦ୍ଧ ଓ ଗରିମାନ୍ତ କରି ପାରିବ।

● *ଗ୍ରା.ପୋ. ଜେହୁଗୁଡ଼ା, ଭା: ବୈପାରୀଗୁଡ଼ା-୭୬୪୦୪୩, ଜିଲ୍ଲା-କୋରାପୁଟ*

୪) ତତ୍ରୈବ -

୫) ସଚ୍ଚିଦାନନ୍ଦ ମିଶ୍ର - କୋଣାର୍କ - ୧ମ ବର୍ଷ - ୪ର୍ଥ ସଂଖ୍ୟା - ୧୯୫୮ - ଓଡ଼ିଆ ସାହିତ୍ୟ ଏକାଡେମୀ - ଭୁବନେଶ୍ୱର

## ପରଜା ଲୋକଗୀତ

# "ଏଇ ଯାଇ ହୋଲୁ ବୋଲୁମି"

ସୁବାସ ଚନ୍ଦ୍ର ମିଶ୍ର

**ଲୋ**ଲୋକ ଗୀତକୁ ସାହିତ୍ୟର ଗଣ୍ଡି ଭିତରକୁ ନେଇ ବିଚାର କରିବା କି ନାହିଁ, ଏହି ମତ ଖୁବ୍ କମ ଅର୍ଥ ରଖେ। ମୂଳ କଥା ହେଲା - ଲୋକ ଗୀତରେ ଥିବା ମାନବୀୟ ମୂଲ୍ୟ, ଯେଉଁଥି ପାଇଁ ଲୋକଗୀତ କେବେହେଲେ ଅର୍ଥ ହରାଏ ନାହିଁ। କେବଳ ନିର୍ଦ୍ଦିଷ୍ଟଭାବେ ଏଇ ମୂଲ୍ୟ ଲୋକଗୀତର ଭାଷାକୁ ଜୀବନ୍ତ ଓ ଉଷ୍ମ ରଖିଥାଏ।

ଲୋକଗୀତର ଶବ୍ଦ ଭିତର ଦେଇ ଆମେ ସମାଜରେ ନିହିତ ଥିବା ଶହ ଶହ ବର୍ଷ ପୁରୁଣା ବିଦଗ୍ଧକ ଏବଂ ମାନବୀୟ ଭାବ ପ୍ରବଣତାକୁ ସଠିକ ଭାବେ ଜାଣି ପାରିଥାଉ। ଆଦିବାସୀ ସମାଜ ସାମ୍ପ୍ରତିକ ଅର୍ଥନୈତିକ ବିକାଶ ଦ୍ୱାରା ପ୍ରଭାବିତ ହେଲେ ମଧ ଏହା ବାହ୍ୟିକ, ଏହା ତା ମନ ଭିତରେ ଥିବା ମୂଳ ମାନବୀୟ ସମ୍ବେଦନ - ଯାହାକି ପାରମ୍ପରିକ ଓ ପ୍ରଥା ଦ୍ୱାରା ଗ୍ରନ୍ଥିତ ହୋଇଛି, ତାହାକୁ ସ୍ପର୍ଶ କରିପାରେ ନାହିଁ। ଏଣୁ ଆଦିବାସୀ ଲୋକଗୀତ ଟୀର ସୁନ୍ଦର, ସରଳ ଓ ମର୍ମସ୍ପର୍ଶୀ। ପ୍ରକୃତିର ବର୍ଣ୍ଣନାରେ ଛବିଳ ଓ ମନୋହାରୀ ଭାବକୁ ନେଇ ସମୁଜ୍ଜ୍ୱଳ। ଏହି ପରି ପ୍ରେକ୍ଷୀରେ ବିଶିଷ୍ଟ ଲୋକ ବିଦ୍ୟାବିତ୍ ଭେରିଅର ଏଲୱିନଙ୍କ ମତରେ, "କେତେକ ଲୋକଗୀତର ଆମ୍ବିକ ଓ ଆଙ୍ଗିକ ସୁଷମାକୁ ଯଦି ସାମ୍ପ୍ରତିକ ଲିଖିତ କବିତା ସହ ତୁଳନା କରାଯାଏ, ତାହେଲେ କାବ୍ୟ ନିଷ୍ଠତା ଏବଂ ସୌନ୍ଦର୍ଯ୍ୟ ଦୃଷ୍ଟିରୁ, ପ୍ରତୀକର ବ୍ୟବହାର ଏବଂ ଚିତ୍ରକଳ୍ପ ଦୃଷ୍ଟିରୁ ଏହାର ମହତ୍ତ୍ୱ ଯେ କେତେ ଊର୍ଦ୍ଧ୍ୱରେ ସହଜରେ ଜାଣି ହେବ।" ଏଥିରୁ ଲୋକଗୀତକୁ ମୂଳ ମଣିଷର ଅସଂସ୍କୃତ, ଅଶିକ୍ଷିତ ମନର ମୌଳିକ ଭାବ ପ୍ରକାଶ ବୋଲି କହି ଏଡ଼େଇ ଦେଇ ହେବ ନାହିଁ। ଯେମିତିକି ଏଲୱିନ ତାଙ୍କ "Indian Folk Poetry"ରେ କହନ୍ତି, "All my life I had a passion for poetry, and it was a wonderful thing to find even among the so called, and so wrongly called backward people, a kind of poetry that in its simplicity, charm and subtelity was worthy to be included in the poetic tradition of the world."

(Akashvani, March 15,1959)

କୋରାପୁଟ ଜିଲ୍ଲାର ମୂଳ ବାସିନ୍ଦା ଭାବେ ଯେଉଁ ଆଦିମ ଜନଜାତି ପରିଚିତ, ସେମାନଙ୍କ ମଧ୍ୟରେ ପରଜା ଅନ୍ୟତମ। କାକରୀଗୁମ୍ମା, ଲକ୍ଷ୍ମୀପୁର, ଦଶମନ୍ତ ପୁର, ନାରାୟଣ ପାଟଣା, ମନ୍ଦୁ ଗାଁ ଅଞ୍ଚଳର ପାହାଡ଼, ପର୍ବତ, ବଣ, ଜଙ୍ଗଲ, ଝୋଲା ଯେଉଁଠି କି ଆମ୍ବ ଗାଁ କି ଜାମ୍ବ ଗାଁ, ମାମୁଁ ଘର ଗାଁ କି ଦାଦି ଘର ଗାଁ, ଯେଉଁଠି ଆମ୍ବ ଗଛ ଗଣା ହୁଏ ତ ଆମ୍ବଡ଼ା ଗଛ ଗଣା ହୁଏ, ଯେଉଁଠି ବର୍ଷା ଭିଜା ମାଟିର ଗନ୍ଧରେ ମଣିଷ ମୋହି ହୋଇଯାଏ, ହଜିଯାଏ ପରଜା କବି, ତା କଳ୍ପନାରେ ଫୁଟିଯାଏ ମଲ୍ଲୀ, ଫୁଟିଯାଏ କଦମ୍ବର ଫୁଲ। ସେ ପରଜା ଲୋକ କବି ବାଗ୍‌ଲା ଜାନି ହେଉଙ୍କ ଚଇତୁ ଜାନି, ସମାରୁ ଜାନି ହେଉ କି ଟେଟେଙ୍ଗ୍ ଜାନି (ନାଆରେ କ'ଣ ଅଛି) କଣ୍ଠରୁ ସ୍ୱତଃ ସ୍ଫୂର୍ତ୍ତ ଭାବେ ଝରିଯାଏ ବର୍ଷାଭିଜା ଗୀତ "ଏଇ ଯା ହୋଲୁ ବୋଲୁମି" (ମୋର ବରଷାର ଗୀତ)। ସେଇ ବରଷାର ଗୀତ ଯାହା ମେଘର ଛାତି ଫଟାଇ ପୃଥିବୀକୁ ଛୁଇଁ ପଶିଯାଏ ମଣିଷ ମରମରେ, ପ୍ରକାଶି ଯାଏ ନିତି ନୂଆ ଭାବକୁ ପୁରୁଣା ଛନ୍ଦରେ।

ସେଇ ଅନାମ ପରଜା କବିର ଗୀତ, "ଏଇ ଯାଇ ହୋଲୁ ବୋଲୁମି"ର ଧରା ଓ ଧାରା, ସ୍ୱରୂପ ଏବଂ ସର୍ବୋପରି ଗୀତର ସଞ୍ଚାରୀ ଭାବର ଉତ୍କର୍ଷ, ଏହି ପ୍ରବନ୍ଧରେ ବିଶ୍ଳେଷଣ କରାଯାଇଛି।

**ମୂଳ ପରଜା ଗୀତ**

ଏଇ ଯାଇ ହୋଲୁ ବୋଲୁମି
ମଲି ତାବୁ ବୋଲୁମି
ବାହୁଣିଆ କୁଲୋଇ
ଏଲୁଟିଓ କୋଷୋଇଁ
ହିନ୍ଦି ଲେକୁ ଚବେନି
ବେଗି କାଟୁ ଅବେନି॥୧॥

**ମୂଳ ଓଡ଼ିଆ ଅନୁବାଦ**

ମୋର ବରଷାର ଗୀତ
ଯେମିତି ଡେମ୍ପ ଉପରେ ମଲ୍ଲୀଫୁଲ
ସେମିତି ସୁନ୍ଦର ଯେ
ତୋ କଳା ବେଣୀରେ
ଝଲସି ଯାଉ ଜାଇ ଫୁଲ
ତୁ ତୋର ବେଣୀ
ଝୁଲାଇ ଆସିବୁ
ମୁଁ ଜାଣେ ତୁ ଆସିବୁ॥୧॥

ଜାଣୁଲାରୁ ଏତେକୁ
ସିକୁଡ଼ରୁ ସେତେକୁ
କର୍ଏଁ କେଲୁ ରୁବେକୁ
ସୋଡ଼ି କେଲ ରୁବେକୁ
ମାରାନୁରୁ ଦସିଡୁ
ଡ଼ଗରକୁ ସସିଡୁ ॥୨ ॥

ମରଣ ପରି ସତ
ତୋ ପ୍ରେମ ଓ ମରଣର ଭୟକୁ
ମୋ କଳ୍ପନାରେ
ତୁମେ ଦୁହେଁ ସେତିକି ସତ
ଏଇଥି ପାଇଁ ଏ ବିଶ୍ୱାସ
ତାକୁ ନେଇ ମୁଁ ଖେଳୁଛି
ଜୀବନର ଖେଳ
ତେଣୁ ମୁଁ ଜାଣେ ତୁ ଆସିବୁ
ମେଘ ଆଉ ବିଜୁଳିରେ
ତୋ ବେଣୀ ମିଶି ଯାଇଥିବ ॥୨ ॥

ଜେଠୁ ହାଣି ମାରିଲି
ବରଷା ଦୂଲି ଆସୁଲି
ଅନ୍ଧାରୁ ହୋ' ମାଲୁ କୋଏଁ
ବିଜୁଳି ହୋ' ଜୁଲୁ କୋଏଁ
କନ୍ଦୁ ବୋନ୍ଦି ଅଇଲି
ଜାଡୁ ବଡୁ ହୋଚିଲି ॥୩॥

ଜ୍ୟେଷ୍ଠ ମେଘର ପାଣି ଅଜାଡ଼ିଲା
ବରଷା ଆସିଲା ପ୍ରିୟ ଘନ ଗରଜନ କରି
ଯେଉଁ ଆଡ଼େ ଦେଖ ଘନ ଅନ୍ଧାର
ବିଜୁଳି ଝଲସି ଛୁଇଁଗଲା ପରା
ପରବତ ମୁଣ୍ଡୁ ଝୋଲା ପାଣି ନେଇ
ପାତାଳ ଅତଳ ତଳ ।
ବଢ଼ି ପାଣି ଆସେ ପ୍ରବଳ ବେଗରେ
ପାହାଡ଼ ଦେହରେ ବଜ୍ର ପଡ଼ଇ ଖସି
ପାହାଡ଼ର ତଳେ ଜଙ୍ଗଲ ଦେଶ
ମଞ୍ଜ ଥରାଇ ଶୀତ ଯେ
ଯାଉଛି ପଶି ॥ ୩॥

ଲିପୁ´ ଜଣ ଲିପୁଲି
ଲିପୁ ତରା ଲିପୁଲି
ଯତାରୁ ହୋ ଲିତିଏଁ
ଶଡ଼ରୁ ଚେନ୍ଦିଲି ॥ ୪ ॥

ଘନ ଅନ୍ଧାରେ
ଜହ୍ନ ଯାଉଛି ହଜି
ତାରା ବି ହଜୁଛି କାହିଁ
ଏଡ଼େ ଅନ୍ଧାର ଯେ
ଦିଶୁ ନି ଆକାଶ ଦିଶୁ ନି ପୃଥିବୀ ପ୍ରତି
ଖାଲି ଦିଶେ କଳା ଛାଇ
ବଡ଼ ଶୀତ ବଡ଼ ଶୀତ ॥ ୪ ॥

ସନେ ପାଣି ଝିପୁଲି
ରୁହଲି ଓ ଝିପୁଲି
ଗାଡୁ ଗଲି କୁନ୍ନାନି
ଜଡ଼ିଗଲି କୁନ୍ନାନି ॥ ୫ ॥

ପାଣି ବରଷୁଛି ଝପର ଝପର
ତିଏଁ ଯାଇ ଓଳିତଳ
ନାଆ ନଥିବା ପାଣି ସୁଅ ଧାଇଁ
ଛୁଏଁ ଝରଣାର କୋଳ ॥ ୫ ॥

ଜାଣୁରାଏଁ ରାବୁନ୍ନୁଁ
ଶୁନୁ କେଡ଼ି କଳମୁଁ
ବିଚୁଲେ ହୋ ମିଡୁଲେ
ନେଚେ ପାଣି କାଡୁଲେ ॥ ୬ ॥

ଝରଣାର ସାଇଁ ସାଇଁ
ବେଙ୍ଗ ରାବନ୍ତି କେଂ କଟର ଯେ
ଚାରି ଆଡ଼େ କୋଳାହଳ
ଶୁଣି ଶୁଣି ତୀରେ
ଟାଙ୍କୁରି ଯାଏ ସତେକି କଦମ୍ବ ଫୁଲ ।
ଏଇ ବରଷାରେ ତୁମେ ଆସ ପ୍ରିୟ
ମେଘ ଢାଳୁଥାଏ ପାଣି
ପ୍ରଥା ଅନୁସାରେ ନୂଆ ବୋହୂ ଯେହ୍ନେ
ପାଦ ଧୁଏ ଦେଇ ପାଣି
ସେମିତି ଏ ମେଘ ସଂକେତ ଦିଏ ମୋତେ
ପୁରି ଉଠେ ମୋର ମନ
ତୁମେ ଆସୁଥିବା ଜାଣି ॥ ୬॥

**ଶବ୍ଦ ଟୀକା :**

୧ ମ ପଦ : ଏଇ ଯାଇ ହୋଲୁ : ମୋରି ବରଷାର ଗୀତ, ବୋଲୁମି : ସୁନ୍ଦର ମଲ୍ଲି: ମଲ୍ଲୀ ଫୁଲ, ଡାହୁ = ଡେମ୍ପ, ବାହୁରିଆ - ବେଣୀ, କୁଲୋଇ = ଝୁଲାଇ, ଏଲୁଟିଓ = ଜାଇଫୁଲ ଖୋସି, କୋଗୋଇଁ ଗଭାରେ, ଇଛି କେକୁ ଟବେନି : ତୁ ଆସିବୁ, ବେଗି କାଟୁ ଅବେନି: ଶୀଘ୍ର ଆସିବୁ।

୨ ୟ ପଦ : ଜାଣୁଭାରୁ ଏତେକୁ ! ତୁମ ପ୍ରେମକୁ, ସିଙ୍କୁ ଡରି ସେତେକୁ; ମରଣର ଭୟ।

୩ ୟ ପଦ : କେଠୁ = ଜ୍ୟେଷ୍ଠ, ଝାରି ମାରିଲା ପାଣି ବରଷିଲା, ଦୁଲି - ଦୁଲୁକା, ଅନ୍ଧାରୁ - ଅନ୍ଧାର, ମାଲୁ କୋର୍ଏ - ଚାରିଆଡ଼େ ବ୍ୟାପିଗଲା, କୁରୁକୋର୍ଏ - ଝଲସିଗଲା ଲଦୁ - ପର୍ବତ, ବୋଡି - ବଢ଼ି, ଟାକୁ - ଶୀତ ବାକୁ - ବହୁତ, ହୋଟିଲି - ଜଙ୍ଗଲ ଦେଶ॥

୪ ର୍ଥ ପଦ : ଲିପୁ - ହଜିଯିବା, ଘଣ୍ଟା ହରାଇବା, ଜଣ - ଜହ୍ନ ଯତାରୁ ଟୋ - ଅନ୍ଧାର, ତିଲିର୍ଏ - ଆକାଶ, ଚଖରୁ - ପୃଥିବୀ, ଟେନ୍ଦିଲି; ବୁଡ଼ିଗଲା।

୫ ମ ପଦ : ସନେ - ବରଷେ, ଝିପୁଲି - ଝପର ଝପର ବୁନ୍ଦଲିଓ - ଓଲିତଳ, ପାଡୁଗଲି - ପଡ଼ିଗଲା, କୁନାନି - ପାଣିସୁଅ, ଜଡ଼ି - (ଯୋଡ଼ି) ଝରଣା।

୬ ଷ୍ଠ ପଦ : ଜାଣୁରାଏ ଜାବୁନ୍ନ - ବେଙ୍ଗର ଙ୍କେ ଙ୍କେ ରାବ ଶୁନୁ - ଶୁଣି, କେଡ଼ି - ଫୁଲ, କଦମ୍ବୁ - କଦମ୍ବ।

## ଏହି ଗୀତର ଧରା ଓ ଧାରା

ଏଇ କବିତାର ଧରା ହେଉଛି ପ୍ରେମ ଏବଂ ପ୍ରକୃତି। ପ୍ରେମିକାର ସତ୍ତାକୁ ଅନୁଭବି ପାରୁଛି ପ୍ରେମିକ। ଗାଁ ମଝିରେ ଥିବା ଧାଙ୍ଗଡ଼ୀ ବସାରୁ ଶୁଭି ଯାଉଛି ପ୍ରେମିକାର ହସ। ଆକାଶ ଉପରୁ ପାଣି ଢାଳୁଛି ଜ୍ୟେଷ୍ଠର ମେଘ। ପ୍ରେମିକ ଉଦାସ। ସେ ସୁରୁଡ଼ିକୁ ଓଠରେ ଲଗାଇଛି। ଉଦାସ ହୋଇ ଯାଉଛି ତା'ର ମନ। ମନର ଭାବ ଗୀତ ହୋଇ ବାହାରି ପଡ଼ିଛି ଅକସ୍ମାତ। ଏଠି ପ୍ରକୃତି ଉଦ୍ଦୀପକ। ପ୍ରେମ ପ୍ରେରଣା। ଗୀତ ଓ ସଙ୍ଗୀତରେ ସଞ୍ଚରୀ ଭାବ ସ୍ପଷ୍ଟ।

ଆକାଶ, ପୃଥିବୀ, ପ୍ରକୃତି ଓ ପରିବେଶକୁ ନିଜସ୍ୱ ପ୍ରତ୍ୟକ୍ଷ ଅନୁଭୂତିରେ ସଜାଡ଼ି ଯେତେବେଳେ କବି ପ୍ରାଣଟି ମତ୍ତ ହୋଇଛି, ସେ ତା ମନ ଭିତରେ ଉଙ୍କି ମାରିଥିବା କୋମଳ ଭାବଟିକୁ ଦେଖିଥିବା, ଜାଣିଥିବା, ଶୁଣିଥିବା ବସ୍ତୁ ମାଧ୍ୟମରେ ସରଳ ଅକୃତ୍ରିମ ଭାଷାରେ ପ୍ରକାଶ କରିଛି ନିବିଡ଼ ଭାବେ, ଅନ୍ତରଙ୍ଗ ଭାବେ।

ସେ ଚିନ୍ତା କରି ନାହିଁ ସାମ୍ପ୍ରତିକ କବିସାର ଧର୍ମ ପରି ତାର ମାନସିକ ପ୍ରସ୍ତୁତି ହୋଇଛି କି ନାହିଁ। ଶବ୍ଦର ଚେତନଶୀଳତା, ଅବଚେତ ମନର ପ୍ରଭା ତା ଉପରେ କେତେ, ସେ କେବଳ ଏକ ଅକସ୍ମାତ ପ୍ରେରଣାରେ ଉନ୍ମାଦିତ ହୋଇ ପାଇ ଯାଉଛି ମଣିଷ ମନର ଆଦିମ ଅବିକଳ ଭାବନାକୁ ତାର ସୀମିତ ଶବ୍ଦ ଭଣ୍ଡାରକୁ ନେଇ। କିଛି ଯୋଡ଼ିନାହିଁ, ଯେତିକି କହିବାକୁ ଚାହିଁଛି ସେତିକି ସଂକ୍ଷିପ୍ତ, ସଂଯତ ତଥା ସଞ୍ଚରନା ଶୀଳ ଶବ୍ଦକୁ ନେଇ ତାର ଗୀତ। ଗୀତର ସନ୍ନିହିତ ଗୀତିଧର୍ମତୀ, ସଙ୍ଗୀତା ନୁସାରି ବିଭଙ୍ଗ ଗୀତର ଆତ୍ମା ଏଣୁ ପେୟ ହୋଇ ପାରିଛି। ଗୀତର ସରଳତା, ମୋହିନୀ ଶକ୍ତି ଓ ସୂକ୍ଷ୍ମଦର୍ଶିତା ଯେ କେତେ ପ୍ରାଣସ୍ପର୍ଶୀ ପାଠକ ମାତ୍ରକେ ତାହା ଉପଲବ୍ଧି କରି ପାରିବେ।

**ରୂପକଳ୍ପ :—**

"In Defence of Peoetry ନାମକ ପ୍ରବନ୍ଧରେ ଶେଲୀ ଦର୍ଶାଇଛନ୍ତି ଯେ, ମନୁଷ୍ୟର ଭାଷା ସ୍ୱଭାବତଃ ଉପମାତ୍ମକ। ସୃଷ୍ଟିର ପ୍ରାରମ୍ଭ କାଳରେ ଆଦିମ ମନୁଷ୍ୟ ଉପମା ମାଧ୍ୟମରେ ପ୍ରକୃତିର ଅନୁକରଣ କରିବାକୁ ଯାଇ ଯେଉଁ ଶବ୍ଦ ଉଚ୍ଚାରଣ କରିଥିଲା, ତାହାଥିଲା କଳ୍ପନାର ଏକ ଛବିଳ ପ୍ରତିରୂପ।"

[କବିତାରେ ପ୍ରତୀକବାଦର ପ୍ରୟୋଗ ଓ ପରିଣତି/ଡଃ ପ୍ରାଣ କୃଷ୍ଣ ଗିରି/ଝଂକାର ମାର୍ଚ୍ଚ ୧୯୯୩]

ଶେଲୀଙ୍କ ଏହି ମତ ପରଜା ଲୋକ କବିଙ୍କ କବିତା "ଏଇ ଯାଇ ବୋଲୁମି" ଭଳି କବିତା ପାଇଁ ପ୍ରାମାଣିକ ଭାବେ ପ୍ରଯୁଜ୍ୟ।

କବିତାର ବର୍ଣ୍ଣିତ ପରିପାର୍ଶ୍ୱିକ ପ୍ରଭାବ ଭାବକୁ ଯେତେବେଳେ ଆଚ୍ଛନ୍ନ କରିଛି, ତାହା ମନକୁ ଦ୍ରବୀଭୂତ କରି ସମ୍ବେଦନଶୀଳ କରି ତୋଳିଛି ଏବଂ ଲୋକକବିର ଗୀତ ଏହାର ସାକ୍ଷ୍ୟ ଦେଉଛି ଏହିପରି :—

"ଏଇ ଯାଇ ହୋଲୁ ବୋଲୁମି
ମଲି ଡାହୁ ବୋଲୁମି
ବାହୁରିଆ କୁଲୋଇ
ଏଲୁଟିଓ କୋମୋଇଁ।"

"ଗୋ ପ୍ରିୟା ମୋର ବରଷା ଗୀତ ଶୁଣ, ମୋର ଗୀତ ଡେମ୍ପ ଉପରେ ଫୁଟିଥିବା ମଲ୍ଲୀଫୁଲ ପରି ସୁନ୍ଦର ଯେ, ତୁ ବାନ୍ଧିଥିବା ବେଣୀରେ ଯାଇ ଫୁଲ ଝଲସି ଯାଉଥିବ, ତୁ ସେହି ବେଣୀ ଦୋହଲାଇ ଆସିବୁ।" କହି ତାର ବରଷାର ଗୀତକୁ ଡେମ୍ପରେ ଫୁଟିଥିବା ମଲ୍ଲୀଫୁଲର ସୌନ୍ଦର୍ଯ୍ୟ ସହିତ ତୁଳନା କରିଥିବା ଚିତ୍ରକଳ୍ପ ଯେତିକି ଜୀବନ୍ତ, ସେତିକି ସହଜ ତାର ସସ ବା ମଞ୍ଚ ଗ୍ରହଣ କରିବ।

ଖାଲି ସେତିକି ନୁହେ, ବର୍ଷା ଆସିଲେ ପ୍ରକୃତି କିପରି ରୂପ ବଦଳାଏ, ତାର ସେହି ସ୍ୱରୂପକୁ ପରଜା ଲୋକ କବି ପ୍ରତ୍ୟକ୍ଷ କରି ଗାଉଛି :—

ଢେଠୁ ହାଣି ମାରିଲି
ବର୍ଷା ଦୁଲି ଆସିଲି
ଅନ୍ଧାରୁ ହୋ' ମାଲୁକୋଏଁ
ବିଜୁଲୀ ହୋ ଜୋଲୁକୋଏଁ

ଜ୍ୟେଷ୍ଠ ମେଘରୁ ପାଣି ପଡୁଛି। ବର୍ଷା ଦୁଲକେଇ ଦଉଛି ଚାରିଆଡ଼। ଅନ୍ଧାର ଘୋଟି ଯାଉଛି, ବିଜୁଳୀ ଚମ୍‌କି ଯାଉଚି ଯେ'। ଯେତେବେଳେ ଅନ୍ଧାର ଘୋଟି ଯାଉଛି :

''ଲିପୁ ଜଣ ଲିପୁଲି
ଲିପୁ ତରା ଲିପୁଲି
ଯଣରୁ ହୋ' ଲିଟିଏଁ
ଶଡ଼ରୁ ଚେନ୍ଦିଲି।''

ଆକାଶରୁ ଉଭେଇ ଯାଉଛି ଜହ୍ନ, ତରା ବି। ଆକାଶ ପୃଥିବୀ କଳା ମିଶ୍ ମିଶ୍ ଚାରିଆଡୁ ମାଡ଼ି ଆସୁଛି ଶୀତ। ଏହା ସେ ନିଜ ଜୀବନରେ ଅନୁଭବିଛି। ଏଣୁ ଏହି ସାର୍ବଜନୀନ ଭାବନା ନିଚ୍ଛକ ଭାବେ, ସଉଳଭାବେ ସେ ପାଇ ଯାଇଛି ଗୀତରେ।

ଲୋକ କବିର ପ୍ରକୃତି ପ୍ରାଣତା ଏହି କବିତା ମାଧମରେ ଯେତେ ସ୍ୱଚ୍ଛଳ ଏବଂ ସାବଲୀଳଭାବେ ପ୍ରକାଶ ପାଇଛି, ତାହା ବିଚାର କଲେ ବିସ୍ମିତ ହେବାକୁ ପଡ଼େ। ତାର ସୂକ୍ଷ୍ମ ଦର୍ଶିତାର ପ୍ରମାଣ ନିମ୍ନ ପଦରୁ ସ୍ପଷ୍ଟ ହୋଇ ପଡ଼େ—

''ସନେ ପାଣି ଝିପୁଲି
ରୁହଲି ଓ ଝିପୁଲି
ପାଡୁ ଗଲି କୁନାନି
ଜଡ଼ିଗଲି କୁନାନି
ଜାଣୁରାଏଁ ଭାବୁନୁଁ
ଶୁନୁ କେଡ଼ି କଜମୁଁ।

ବର୍ଷା ପଡୁଛି ଝପର ଝପର। ଡେଇଁ ପଡୁଛି ଓଳି ତଳକୁ ଧାର ବରଷାର ପାଣି। ଅନାମିକା ପାରି ସୁଅ ଧାଇଁ ଯାଉଛି ଗୀତ, ଖାଲ ଡେଇଁ ମିଶି ଯାଉଛି ଝରଣାରେ। ଝରଣାରେ ସାଇଁ ସାଇଁ ଶବ୍ଦ ଓ ବେଙ୍ଗର କୋଳାହଳ ଶୁଣି କଦମ୍ବ ଫୁଲ ରୋମାଞ୍ଚିତ ହୋଇ ଯାଉଛି, ଟାଙ୍କୁରି ଯାଉଛି ତା'ର କେଶର କେଶର।

ଏହି ପ୍ରଭାବଶାଳୀ ଚିତ୍ରରୂପ ମନକୁ ଛୁଇଁବାରେ କମ ସଶକ୍ତ ନୁହଁ। ପ୍ରେମିକ କବିର ଭାବାବେଗ ଯେତେବେଳେ ଉଦ୍ଦାମ, ତା ମନରେ ସଞ୍ଚରି ଯାଉଛି ବିଶ୍ୱାସ। ସେ କଳ୍ପନା କରିଛି ତା ମନରେ ପ୍ରେମିକାର ପ୍ରେମ ତା ପାଇଁ ମରଣ ପରି ସତ୍ୟ, ସେଥି ପାଇଁ ତ ସେ ଜୀଇଁ ଯାଉଛି ନିଜର ଜୀବନ ଏଇ ବିଶ୍ୱାସରେ ଯେ ସେ (ପ୍ରେମିକା) ମେଘ ବରଷା ଦେଇ ଆସିବ, ଅନ୍ଧକାରରେ ମିଶି ଯାଇଥିବ ତା ବେଣୀ, ସେଇ ମର୍ମଦାହ ଓ ବିଶ୍ୱାସର ସଶକ୍ତ ରୂପକାର କବି ସୁରୁଡ଼ି (ବଂଇଶୀ) ବଜାଇ ଗାଇଛି :

ଜାଣୁଲାରୁ ଏତେକୁ
ସିକୁଡ଼ରୁ ସେତେକୁ
କାଏଁ କେଲୁ ଭୁବେକୁ, ଭୁବେନି
ସୋଡ଼ି କେଲ ଭୁବେକୁ, ଭୁବେନି।''

''ମୋ ପ୍ରିୟ ତୁମେ ମରଣ ପରି ସତ୍ୟ। ମୋର କଳ୍ପନାରେ ତୁମ ପ୍ରେମ ଓ ମଉତାର ଭୟ ଦୁହେଁ ସତ। ଏଇ ବିଶ୍ୱାସରେ ମୁଁ ଜୀବନ ବିତାଉଛି ଯେ, ତୁମେ ଆସିବ।''

''ପ୍ରେମରେ ବିଶ୍ୱାସ ହିଁ ଯେ ଜୀବନର ମରମ କଥା'' ଏହା ଯେଉଁ ଲୋକକବି ବୁଝି ପାରିଥିଲା ଏବଂ ଏହି ଗୀତକୁ ଜନ୍ମ ଦେଇଥିଲା, ତାହାର କାବ୍ୟିକ ସୁଷମା, ସାରଲ୍ୟ, ଚିତ୍ର ଉଦ୍ରେକକାରୀ ଶବ୍ଦ ସଂଯୋଜନା, ମାନବୀୟ ମୂଲ୍ୟବୋଧରେ ଭାସ୍ୱର ମର୍ମକଥନ ଏବଂ ସର୍ବ କ୍ଷେତ୍ରରେ ପାରପାର୍ଶ୍ୱିକ ସୂକ୍ଷ୍ମଦର୍ଶିତା ଯେ, କୋରାପୁଟ ଲୋକଗୀତର ଏକ ଆଚର୍ଯ୍ୟ ଐଶ୍ୱର୍ଯ୍ୟ ଏବଂ ଆବେଦନ ଯେ ହୃଦୟ ସ୍ପର୍ଶୀ ଏହା କମ ଗୁରୁତ୍ୱପୂର୍ଣ୍ଣ ନୁହେ।

*କୃତଜ୍ଞ √ ଗୋପିନାଥ ମହାନ୍ତିଙ୍କ ନିକଟରେ, ଏହି ପ୍ରବନ୍ଧର ଲିଖି ପ୍ରେରଣାରେ ସେ ହେଉଛନ୍ତି ତଥା। ଗ୍ରନ୍ଥ ସଂକେତ : ଉପନ୍ୟାସ ପରଜା √ ଗୋପିନାଥ ମହାନ୍ତି।*

● ଉମରକୋଟ, ଜି-ନବରଙ୍ଗପୁର।

# ବିସ୍ମୃତ ପତ୍ରିକା "ପ୍ରଜାବାଣୀ"

ଶିବରାମ ପାତ୍ର

'ପ୍ରଜାବାଣୀ' ଅବିଭକ୍ତ କୋରାପୁଟ ଜିଲ୍ଲାର ପ୍ରଥମ ସାପ୍ତାହିକ ସଂବାଦ ପତ୍ର ଏବଂ ସମ୍ଭବତଃ ଏହା ହିଁ ଏ ଜିଲ୍ଲାର ପ୍ରଥମ ସାମୟିକ (Periodical) ପତ୍ରିକା। ୧୯୪୦ ସାଲରୁ ୧୯୬୦ ସାଲ ପର୍ଯ୍ୟନ୍ତ ପ୍ରାୟ ୨୦ ବର୍ଷ ପ୍ରକାଶିତ ଏ ପତ୍ରିକାର ସଂପାଦକ, ପ୍ରକାଶକ ଓ ମୁଦ୍ରକ ଥିଲେ ଓଡ଼ିଶାର ସୁ-ପ୍ରସିଦ୍ଧ ଓଡ଼ିଆ ଜାତୀୟବାଦୀ ନେତା ସ୍ୱର୍ଗତ ହରିହର ମିଶ୍ର। ରାଜ କବି ମହାରାଜା ଶ୍ରୀ ବିକ୍ରମ ଦେବ ବର୍ମାଙ୍କ ଅର୍ଥ ସାହାଯ୍ୟରେ ପ୍ରତିଷ୍ଠିତ କୋରାପୁଟ ଜିଲ୍ଲାର ପ୍ରଥମ ପ୍ରେସ୍ 'ବିକ୍ରମ ପ୍ରେସ୍'ରେ ଏହା ମୁଦ୍ରିତ ହେଉଥିଲା। 'ଏଇ ପ୍ରେସ୍‌ଟି ନିକଟ' ଅତୀତରେ ଜୟପୁରର 'ଶବରୀ ଆର୍ଟ ପ୍ରିଣ୍ଟର୍ସ' ଗର୍ଭ ମଧ୍ୟରେ ଆତ୍ମହତ୍ୟା କରିଛି।

ଜିଲ୍ଲାର ସେ ଆକର୍ଷଣୀୟ ବ୍ୟକ୍ତିତ୍ୱ ଶ୍ରୀ ହରିହର ମିଶ୍ର ଆଜି ନାହାନ୍ତି କି ତାଙ୍କ ସଂପାଦିତ 'ପ୍ରଜାବାଣୀ' ପତ୍ରିକା ନାହିଁ। ତେବେ ଆଜି ବି ଲୋକ ମୁଖରେ ହରିହର ଓ ତାଙ୍କ 'ପ୍ରଜାବାଣୀ' ବହୁ ଆଲୋଚିତ, ବହୁ ପ୍ରଶଂସିତ ଓ ଜନ ସ୍ମୃତିରେ ତେଣୁ ଏ ଦୁହେଁ ପ୍ରଭାବଶାଳୀ କିମ୍ବଦନ୍ତୀ ଭଳି; ତଥାପି ଜୀବନ୍ତ।

୧୯୪୭-୫୦ରେ ପ୍ରକାଶିତ 'ପ୍ରଜାବାଣୀ'ର କେତେକ ସଂଖ୍ୟା ଅଧ୍ୟୟନରୁ ହରିହରଙ୍କ ଦେଶ ପ୍ରୀତି ଓ ପ୍ରତିଭାର ପରିଚୟ ପାଇହୁ ଏବଂ ତାଙ୍କ ସମ୍ବାଦ ପତ୍ରର ଇତିହାସରେ ଏହାର ଏକ ସ୍ୱତନ୍ତ୍ର ସମ୍ମାନଜନକ ସ୍ଥାନ ଅବଶ୍ୟ ରହିଛି। ଏହାର ସଂବାଦ ପରିବେଷଣ ଶୈଳୀ ଓ ସଂପାଦନାରେ ମୌଳିକତା ଲକ୍ଷ୍ୟ କରାଯାଏ। ସଂପାଦକ ସ୍ପଷ୍ଟବାଦୀ ନିର୍ଭୀକ, ରକ୍ଷଣଶୀଳ ଓ ପରଂପରା ପ୍ରିୟ ଥିଲେ। ପ୍ରଜାବାଣୀ'ର ବାଣୀ ଥିଲା :

"କାଲେ ବର୍ଷତୁ ପର୍ଜନ୍ୟଃ
ପୃଥିବୀ ଶସ୍ୟଶାଳିନୀ
ଦେଶୋଽୟଂ କ୍ଷୋଭ ରହିତୋ
ବ୍ରାହ୍ମଣାଃ ସନ୍ତୁ ନିର୍ଭୟାଃ।।"

ଅର୍ଥାତ୍ ଯଥା ସମୟରେ ବର୍ଷା ବର୍ଷୁ। ପୃଥିବୀ ଶସ୍ୟଶାଳିନୀ ହେଉ। ଏହି ଦେଶ କ୍ଷୋଭଶୂନ୍ୟ ହେଉ। ଜ୍ଞାନୀମାନେ ନିର୍ଭୟ ହୁଅନ୍ତୁ।

ପ୍ରାଚୀନ ଭାରତର ଏଇ ପ୍ରସିଦ୍ଧ ଶ୍ଳୋକ 'ପ୍ରଜାବାଣୀ'ର ସଂପାଦକୀୟ ସ୍ତମ୍ଭର ଶୀର୍ଷଦେଶ ମଣ୍ଡନ କରୁଥିଲା। ଏହି ଦର୍ଶନ ହିଁ 'ପ୍ରଜାବାଣୀ'ର ଗଣ୍ଠିଧନ ଥିଲା। ଏଥିରେ ପ୍ରକାଶିତ ସଂପାଦକୀୟ, ସଂପାଦକଙ୍କୁ ପତ୍ର, ଟିପ୍‌ପଣୀ ସ୍ତମ୍ଭ ସକଳ ଲେଖାରେ, ସଂକ୍ଷେପରେ କହିଲେ, ଏହାର ସଂପାଦନାରେ ଏହି ବାଣୀଟି ହିଁ ମର୍ମବାଣୀ ରୂପେ ପ୍ରତିଫଳିତ ହେଉଥିଲା।

ଏଇ ସାପ୍ତାହିକ 'ପ୍ରଜାବାଣୀ' ପ୍ରତି ସୋମବାର ଦିନ ପ୍ରକାଶ ପାଉଥିଲା। ନିୟମିତ ପ୍ରକାଶ କରିବାକୁ ପାରୁପର୍ଯ୍ୟନ୍ତ ଚେଷ୍ଟା କରାଯାଉଥିଲା। କାଗଜ ଅଭାବରୁ ବେଳେବେଳେ ଏହା ମାଟିଆ ମଲାଟ କାଗଜ (Cover Paper)ରେ ମଧ୍ୟ ଛପା ଯାଉଥିଲା।

୧୯୪୭ରୁ ୧୯୫୦ ପର୍ଯ୍ୟନ୍ତ 'ପ୍ରଜାବାଣୀ'ର ମୂଲ୍ୟ ଥିଲା ପ୍ରତିଖଣ୍ଡ ଛଅ ପଇସା (ଟ୦/୬)। ଜୟପୁର ପାଇଁ ବାର୍ଷିକ ମୂଲ୍ୟ ଟ ୩/- ଓ ଅନ୍ୟାନ୍ୟ ସହର/ମଫସଲ ପାଇଁ ବାର୍ଷିକ ମୂଲ୍ୟ ଥିଲା ଟ୪/-। ସାଧାରଣତଃ ଏହା ଚାରି ପୃଷ୍ଠା ହେଉଥିଲା। କାଗଜର ଲମ୍ବ ଥିଲା ୧୩" ଓ ଓସାର ଥିଲା ୯ ଇଞ୍ଚ। ବେଳେବେଳେ ଏଥିରେ ଊଣା ଅଧିକ ବି ହେଉଥିଲା। ଲମ୍ବ ୧୮ ଇଞ୍ଚ ପର୍ଯ୍ୟନ୍ତ ହେବାର ଦୃଷ୍ଟାନ୍ତ ଅଛି। ୧୯୪୭ ରେ ଏହାର ଶିରୋନାମା (Title Head) ଉଭୟ ଓଡ଼ିଆ ଓ ଇଂରାଜୀ ଅକ୍ଷରରେ ସରଳ ସ୍ପଷ୍ଟ ଥିଲା। ୧୯୪୮/୧୯୪୯ରେ ଏ' ଶିରୋନାମା କିନ୍ତୁ ବେଶ୍ କଳାତ୍ମକ। ଶିରୋନାମାର ପୃଷ୍ଠଭୂମିରେ ଉଦୟ ସୂର୍ଯ୍ୟ ଏବଂ ତା'ର ସମ୍ମୁଖରେ ହଳ ଲଙ୍ଗଳ ସହ କର୍ମରତ କୃଷକ ଓ ମଥା ଉପରେ ଶସ୍ୟ ବୋଝ ନେଇ କୃଷକ ରମଣୀର ଘର ବାହୁଡ଼ା ଚିତ୍ରରୁ ମାଟି ଓ ମଣିଷ ସହ ପତ୍ରିକାଟିର ସଂପୃକ୍ତି କେତେ ଘନିଷ୍ଠ ବାରି ହୋଇଯାଏ।

ଅନେକ ସମୟରେ ବହୁ ବିଷୟ ଇଂରାଜୀ ଭାଷାରେ ପତ୍ରସ୍ଥ ହୋଇଛି। ଏଥିରେ ଓଡ଼ିଆ ଭାଷାର ବୈଚିତ୍ର୍ୟ ଅଧ୍ୟୟନ ପାଇଁ ବହୁ ଉପାଦାନ ରହିଛି। ଏହାର ଭାଷା ମାନକ ଓଡ଼ିଆ ଭାଷା। କିନ୍ତୁ ସ୍ଥାନୀୟ ସମସ୍ୟା ପରିବେଷଣରେ ଆଂଚଳିକ ଶବ୍ଦ ସମ୍ଭାରର ବହୁଳ ପ୍ରୟୋଗ ହୋଇଛି। ଶାସନର ନିଦ୍ରା ଭଙ୍ଗ ପାଇଁ ଲୋକୋକ୍ତିର କାର୍ଯ୍ୟକାରିକା ଶକ୍ତି ଅଛି। ଏହା

ହୃଦୟଙ୍ଗମ କରି ପଣ୍ଡିତେ ବରାବର ଲୋକୋକ୍ତିମାନ ପ୍ରସଙ୍ଗ କ୍ରମେ ପ୍ରୟୋଗ କରିଛନ୍ତି। ଏଥିରେ ସରକାରୀ/ବେସରକାରୀ ବିଜ୍ଞାପନ ଓଡ଼ିଆ ଓ ଇଂରାଜୀ ଭାଷାରେ ନିୟମିତ ପ୍ରକାଶିତ ହୋଇଛି। ନାଟକ ଓ ସାହିତ୍ୟ ସଂପର୍କୀୟ ବିଜ୍ଞାପନ ତଥା ସଂବାଦ ଅବଶ୍ୟ ସ୍ଥାନ ପାଇଛି। ବିଷୟବସ୍ତୁ କେବେ ତିନୋଟି ତ କେବେ ଚାରୋଟି ସ୍ତମ୍ଭରେ ସ୍ଥାନିତ ହେଉଥିଲା, ୨୪,୨୦,୧୮,୧୪,୧୨ ପଏଣ୍ଟ ଅକ୍ଷର ବିଭିନ୍ନ ଉଦ୍ଦେଶ୍ୟରେ ବ୍ୟବହାର କରାଯାଉଥିଲା। ଡାକଯୋଗେ ପ୍ରେରଣରେ 'ପ୍ରଜାବାଣୀ'ର ପ୍ରତି ସଂଖ୍ୟା ସକାଶେ ତିନି ପଇସାର ଡାକ ଟିକେଟ୍ ବ୍ୟବହାର କରାଯାଉଥିଲା।।

ଦୁଇ ଦଶନ୍ଧି ଧରି ସମଗ୍ର ଅବିଭକ୍ତ କୋରାପୁଟ ଜିଲ୍ଲାରେ 'ପ୍ରଜାବାଣୀ' ବିପୁଳ ଲୋକପ୍ରିୟତା ଅର୍ଜନ କରିଥିଲା। ଗୁଣପୁର/ଗୁଡ଼ାରିଠାରୁ ଆରମ୍ଭ କରି ଉମରକୋଟ ଯାଏ ଏହାର ପ୍ରସାର ଥିଲା। ସର୍ବଶ୍ରୀ ଲାଲ ଲମ୍ବୋଦର ସିଂହ, ଜଗଦୀଶ ଚନ୍ଦ୍ର ନାୟକ, ମଞ୍ଜୁଘୋଷ ତ୍ରିପାଠୀ, ପି. ସୁବାରାଓ, ପି. ସୂର୍ଯ୍ୟନାରାୟଣ, ବିଶ୍ୱନାଥ ମହାପାତ୍ରଙ୍କ ଭଳି ବହୁ ତରୁଣ ପ୍ରବୀଣ ବୁଦ୍ଧିଜୀବୀ ଏଥିରେ ଲେଖୁଥିଲେ। ଓଡ଼ିଶାର ସୁପ୍ରସିଦ୍ଧ ଲୋକ ସେବକ ଲେଖକ ଲକ୍ଷ୍ମୀନାରାୟଣ ସାହୁ ବରାବର ଲେଖୁଥିଲେ। ସେ ମଧ କୋରାପୁଟର ସମସ୍ୟା ପ୍ରତି ସଜାଗ ଥିଲେ। କୋରାପୁଟର ବୁଦ୍ଧିଜୀବୀଏଁ କୋରାପୁଟର ସମସ୍ୟା ସହ ଓଡ଼ିଶାର ନାନା ସମସ୍ୟା ବିଶେଷତଃ ସୀମା ସମସ୍ୟା ନେଇ ସ୍ୱର ଉତ୍ତୋଳନ କରୁଥିଲେ। ଏ ସ୍ୱର ବି ବଡ଼ ତୀବ୍ର ଥିଲା। ସମଗ୍ର କୋରାପୁଟ ଜିଲ୍ଲାର ସମ୍ମିଳିତ ସ୍ୱର ହିଁ ଥିଲା 'ପ୍ରଜାବାଣୀ'। ବିଭିନ୍ନ ସମୟରେ ଏଥିରେ ପ୍ରକାଶିତ 'ଜୟପୁର ରାଜ୍ୟର ଗୋତି ନୌକର ସମସ୍ୟା, ଓଡ଼ିଶା ଷ୍ଟେଟ ବଜେଟ୍, ଓଡ଼ିଶାର ପୋଲ ତିଆରି ଯୋଜନା, ଓଡ଼ିଶା ଦେଶ ମିଶ୍ରଣ, କୋରାପୁଟ ଜିଲ୍ଲାରେ ପଡ଼ି ପ୍ରଥା, ଷଢ୍ଢେଇକଳା ଓ ଖରସୁଆଁ ସମସ୍ୟା, ପ୍ରଗତିଶୀଳ ଭାରତରେ ଉର୍ବର ଓଡ଼ିଶା, ଜୟପୁରରେ ଗଭର୍ଣ୍ଣମେଣ୍ଟ କଲେଜ' ପ୍ରଭୃତି ଲେଖାରୁ କୋରାପୁଟର ସ୍ୱରର ସ୍ୱରୂପ କଳନା କରାଯାଇ ପାରିବ। ସେ କାଳର ଘୋର ଅନୁନ୍ନତ କୋରାପୁଟର ସକାଳ ଅଭାବ ଓ ଅସୁବିଧା ଭିତରେ ଆତ୍ମ ପ୍ରକାଶ କରି 'ପ୍ରଜାବାଣୀ' ଜୀବନ ସଂଗ୍ରାମ କରୁଥିଲା। ପଣ୍ଡିତ ହରିହରଙ୍କ ଉଦ୍ୟମର ଅନ୍ତ ନ ଥିଲା। ସ୍ଥାନୀୟ ସଂବାଦ ସହ ଜାତୀୟ ଆନ୍ତର୍ଜାତିକ ସଂବାଦ ଏଥିରେ ପରିବେଷିତ ହେଉଥିଲା। ତେବେ ଲୋକଙ୍କ ଭିତରେ ଉତ୍କଳୀୟ ଭାବର ବିକାଶ ତଥା ସ୍ୱତନ୍ତ୍ର ଉତ୍କଳର ସମ୍ମାନ ଓ ସମୃଦ୍ଧି ହିଁ ଏହାର ସ୍ୱପ୍ନ ଥିଲା। ଏ ଭାବର ପ୍ରଚାର କରି ପଣ୍ଡିତ ହରିହର ଜିଲ୍ଲାରେ ସାଂସ୍କୃତିକ ନବଜାଗରଣ ସୃଷ୍ଟି କରି ଦେଇଥିଲେ। ଏ ପର୍ଯ୍ୟନ୍ତ ଏକଥା ଜିଲ୍ଲାବାସୀ ମୁକ୍ତ କଣ୍ଠରେ ପ୍ରକାଶ କରନ୍ତି। ସାହିତ୍ୟକ ଶ୍ରୀ ରାମନାଥ ପଣ୍ଡା କହନ୍ତି ''କୋରାପୁଟ ଜିଲ୍ଲାର ପ୍ରଥମ ସପ୍ତାହିକ ପତ୍ରିକା 'ପ୍ରଜାବାଣୀ'ର ସଂପାଦକ ପଣ୍ଡିତ ହରିହର ମିଶ୍ରଙ୍କ ନେତୃତ୍ୱରେ ଯେତେବେଳେ କୋରାପୁଟ ଜିଲ୍ଲାର କୋଣେ କୋଣେ ଉତ୍କଳୀୟ ଭାବର ନିଆଁ ଧରିଲା, ସେତେବେଳେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ପ୍ରତି ଏକ ପ୍ରକାର ଜାଗରଣର ସ୍ପର୍ଶ ଅନୁଭବ କରିହେଲା।''

ଓଡ଼ିଶାର ପ୍ରଥମ ସାପ୍ତାହିକ 'ଉତ୍କଳଦୀପିକା' (୧୮୬୬) ପ୍ରଥମ ଦୈନିକ ପତ୍ରିକା 'ଦୈନିକ ଆଶା' (୧୯୨୮) କିମ୍ବା ବହୁ ଜନାଦୃତ ସଂବାଦପତ୍ର 'ସମାଜ' (୧୯୩୦) ସହିତ 'ପ୍ରଜାବାଣୀ'ର ତୁଳନା କରାଯାଇ ପାରେ। କର୍ମବୀର ଗୌରୀଶଙ୍କର ରାୟ (୧୮୩୮-୧୯୧୭), ନରବ୍ୟାଘ୍ର ଶଶୀ ଭୂଷଣ ରଥ (୧୮୮୫-୧୯୪୩) ଓ ପଣ୍ଡିତ ଗୋପବନ୍ଧୁ ଦାସ (୧୮୭୭-୧୯୨୮) ଯେଉଁ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ନେଇ ସାମ୍ବାଦିକତାର ଜଟିଳ ଓ କୁଟୀଳ ପଥରେ ଓହ୍ଲାଇ ଓଡ଼ିଶାର ସେବା ନିରବଚ୍ଛିନ୍ନ ସାଧନା କରିଥିଲେ, ଅସୀମ ତ୍ୟାଗ ସ୍ୱୀକାର କରିଥିଲେ, ହରିହର ମିଶ୍ରଙ୍କଠାରେ ସେ ସକଳ ଲକ୍ଷ୍ୟ କରାଯାଏ।

ସେମାନେ ବିଖଣ୍ଡିତ ଓଡ଼ିଶାର ସର୍ବବିଧ ଉନ୍ନତି ପାଇଁ ପ୍ରୟାସୀ ଥିଲେ, ହରିହର ସ୍ୱତନ୍ତ୍ର ଓଡ଼ିଶାର ସର୍ବାଙ୍ଗୀନ ପ୍ରଗତି ପାଇଁ ବ୍ୟାକୁଳ ଥିଲେ ଏବଂ ସୀମାନ୍ତର ଜାଗ୍ରତ ପ୍ରହରୀ ଥିଲେ। ତାଙ୍କ ହାତରେ ଥିଲା ଶକ୍ତିଶାଳୀ ଅସ୍ତ୍ର - ଏ 'ପ୍ରଜାବାଣୀ'! ରାଜ୍ୟର ସମସ୍ୟା ପ୍ରତି କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରୁଥିଲେ ଶତ୍ରୁ ଶିବରକୁ ଚେତାବନୀ ଦେଉଥିଲେ ଏବଂ ସୁପ୍ତ ରାଜ୍ୟ ବାସୀଙ୍କ ନିଦ୍ରାଭଙ୍ଗ ପାଇଁ ଆହ୍ୱାନ ଦେଉଥିଲେ। ୧୯୪୭ ସେପ୍ଟେମ୍ବର ୧୫ ତାରିଖର ପ୍ରଜାବାଣୀ'ରେ ପ୍ରକାଶିତ କବିତା 'ଯଶମା' ବିଚାର୍ଯ୍ୟ ତା'ର କିୟଦଂଶ ଉଦ୍ଧାର କରୁଛୁ:

''ଆହା ଓଡ଼ିଆ ଆଜି ଘରେ ପଶିଛି
ନାହିଁ କିଛି
ଓଡ଼ିଆ ଥିଲା ଏକ କାଳେ
ସଂସାରର ଚାରିଆଡ଼େ ବାଛି ବାଛି
ଓଡ଼ିଆ ! ଉଠ ଆଉ ଥରେ, ଉଠ, ଉଠ
ନ ଶୋଇ ପଡ଼, ଉଠ, ଆସିଛି ବେଳ
ଉଠ ସତ୍ୱର।'' (ପୃ - ୨)

'ପ୍ରଜାବାଣୀ'ର ଏ ବ୍ୟାକୁଳ ସ୍ୱର ସତେ କେତେ ତୀବ୍ର, କେତେ ଆନ୍ତରିକ, କେତେ ମର୍ମସ୍ପର୍ଶୀ ! ସଂବାଦପତ୍ର ସମୟର ପ୍ରାଣସ୍ପନ୍ଦନକୁ ବହନ କରିଥାଏ। ସମାଜର ସାମଗ୍ରିକ ରୂପ ସ୍ୱରୂପର ବାସ୍ତବ ଚିତ୍ର ଏଥିରେ ପ୍ରକାଶିତ ହୋଇଥାଏ। ସଂବାଦପତ୍ର ପୃଷ୍ଠାରୁ ଗୋଟିଏ ସମାଜର ମାନସିକ ସ୍ଥିତି ବା ସ୍ୱରୂପ ସହଜରେ ନିର୍ଣ୍ଣୟ କରାଯାଇ ଜାତିର ଆଧୁନିକ ଇତିହାସ ପ୍ରଣୟନ କରାଯାଇ ପାରିବ। ତେଣୁ ପ୍ରାଚୀନ ସାହିତ୍ୟ, ପୁରାଣ, ଅଭିଲେଖ, କିମ୍ବଦନ୍ତୀ ଆଦି ଲୋକ ସାହିତ୍ୟର ସଂକଳନ ଭଳି।

ପୁରୁଣା ସଂବାଦ ପତ୍ରର ଜୀର୍ଣ୍ଣ ପୃଷ୍ଠାରୁ ତଥ୍ୟାବଳୀ ଉଦ୍ଧାର କରି ସେସବୁର ଆକର୍ଷଣୀୟ ସଂକଳନ ଓ ପ୍ରକାଶନ ବହୁତ ହେଲାଣି। ବଙ୍ଗଳା ଭାଷାର ସଂବାଦପତ୍ର 'ସେ କାଲେର କଥା', ସ୍ୱର୍ଗତ ସୁଧାକର ପଟ୍ଟନାୟକଙ୍କ 'ସଂବାଦ ପତ୍ରରୁ ଓଡ଼ିଶାର କଥା' (୧୯୭୨) ଦୁଇଟି ଅବଶ୍ୟ ଉଲ୍ଲେଖନୀୟ ଉପାଦେୟ ଗ୍ରନ୍ଥ। ବର୍ତ୍ତମାନ ସମୟ ହୋଇ ଗଲାଣି ପୁରୁଣା 'ପ୍ରଜାବାଣୀ' ସଂଗ୍ରହ କରାଯାଇ ତା'ର ଜୀର୍ଣ୍ଣ ପୃଷ୍ଠାରୁ ସମସ୍ତ ବିଷୟ ଉଦ୍ଧାର କରିବାକୁ ହେବ। ଏବଂ ସଂକଳନମାନ ପ୍ରକାଶ କରିବାକୁ ହେବ। ଏ ଏକ ଗୁରୁତ୍ୱପୂର୍ଣ୍ଣ ଜାତୀୟ କାର୍ଯ୍ୟ।

ଆମେ ପୁରୁଣା ପ୍ରଜାବାଣୀ'' ରୁ କିଛି ଉଦ୍ଧାର କରୁଛୁ। ୧୯୪୭ ସେପ୍ଟେମ୍ବର ୨୯ ତାରିଖର 'ପ୍ରଜାବାଣୀ'ର ସଂପାଦକୀୟ କହେ –

....୨୨ ଲକ୍ଷ ଟଙ୍କା ଆୟ ବିଶିଷ୍ଟ, ପ୍ରଦେଶର ପ୍ରାୟ ଏକ ତୃତୀୟାଂଶ ୧୧ ହଜାର ବର୍ଗ ମାଇଲ ବିସ୍ତୃତ ରାଜ୍ୟର ଏକାଙ୍ଗ ଚକ୍ରବର୍ତ୍ତୀ ପୁଣ୍ୟ ଶ୍ଳୋକ, ଦାନ ପରାୟଣ, ଦୟାଦ୍ର ହୃଦୟ ବିକ୍ରମ ଦେବ ବର୍ମା....ଋଷି ପ୍ରତିମା ମହାରାଜା ବ୍ୟକ୍ତିଗତ ବ୍ୟୟରେ ମାସିକ ଶହେ ଟଙ୍କାରୁ ଊଣା ଖର୍ଚ୍ଚ କରନ୍ତି। ରାଜୋଚିତ ପ୍ରହରୀର ଆଡ଼ମ୍ବର ନାହିଁ। ଦୁଇଖଣ୍ଡ କଷାୟ ବସ୍ତ୍ର ତାଙ୍କର ଆବରଣ। ଚପଲ ଦୁଇଟି ତାଙ୍କର ପାଦୁକା। ୧୦ ଲକ୍ଷ ପ୍ରଜା ତାଙ୍କର ଆଦେଶାନୁବର୍ତ୍ତୀ। ...ତାଙ୍କର ହାତ ଖୋଲା। ତାଙ୍କର ହୃଦୟ ସରଳ।....

୧୯୪୮ ମେ' ୨୪ ତାରିଖ 'ପ୍ରଜାବାଣୀ'ରେ ଲକ୍ଷ୍ମୀ ନାରାୟଣ ସାହୁ ଲେଖନ୍ତି :

''ଓଡ଼ିଆ। ଓଡ଼ିଆ। ତୁ ବୁଝ, ତୁ କେତେ ବଡ଼ ଥିଲୁ। ତୋର ପୂର୍ବ ପୁରୁଷର ଇତିହାସ ଭଲ କରି ପଢ଼।... ପୂର୍ବ ଗୌରବର ଏହି କଥା, କୀର୍ତ୍ତି ବିଷୟରେ ସବୁ ଭାବିଲେ ଚିତ୍ତରେ ଗୋଟିଏ ନବଭାବ ଜାଗ୍ରତ ହୁଏ, ଗୋଟିଏ ଶଙ୍କା ମଧ ଆସେ ଅବସାଦ ମଧ ଆସେ। ଆଉ ଓଡ଼ିଆ ପୁଣି ତାର ପୂର୍ବ ପୁରୁଷର ଗୌରବ ପରି ଗୌରବ ତିଆରି କରି ପାରିବ ନାହିଁ? ଏହିଠାରେ ଟିକିଏ ରହିଯିବାକୁ ପଡ଼େ – ଭାବିବାକୁ ପଡ଼େ।''

● *ଆକାଶବାଣୀ, ଜୟପୁରଙ୍କ ସୌଜନ୍ୟରୁ ପ୍ରଚାରିତ*



[illegible]
[illegible]''
– ମଧୁସୂଦନ ଦାସ

ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ,
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ।''
– ଭୀମ ଭୋଇ।

# କବି ମଞ୍ଜୁ ଘୋଷ ତ୍ରିପାଠୀ ଏକ ବିହଙ୍ଗାବଲୋକନ

**ଶ୍ରୀ ଲଳିତ ମୋହନ ପଟ୍ଟନାୟକ**

"ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧର କବି ୰ ମଞ୍ଜୁ ଘୋଷ ତ୍ରିପାଠୀ ଥିଲେ ଏକାଧାରରେ କବି, ସଂଗ୍ରାହକ, ଅନୁବାଦକ, ପଣ୍ଡିତ ଓ ଜ୍ୟୋତିର୍ବିଦ୍। କବିଙ୍କ ଜନ୍ମସ୍ଥାନ ନବରଙ୍ଗପୁର। ତାଙ୍କର ଅମର ଲେଖନୀରୁ 'ନୀତିରତ୍ନ ମଞ୍ଜୁଷା', 'ସୂକ୍ତିମାଳା', 'ଗୁପ୍ତେଶ୍ୱର ମହାତ୍ମ୍ୟ', 'ଚଇତ ପରବ' (ବାରମାସୀ), 'ଋତୁ ସଂହାର', 'ନାମାବଳୀ', 'ଗୋପୀଗୀତା', ପ୍ରକାଶିତ ହୋଇ ଓଡ଼ିଆ ସାହିତ୍ୟ ଦରବାରକୁ ସମୃଦ୍ଧ କରିଛି। ତଥାପି ତାଧିକ ପ୍ରହେଳିକା, ଗୀତିଗୁଚ୍ଛ ଅପ୍ରକାଶିତ ହୋଇ ରହିଛି।

କବି ବାଲ୍ୟ ଜୀବନରୁ ହିଁ ଅଧ୍ୟବସାୟୀ ଥିଲେ। ୧୯୧୫ ମସିହାରେ ତାଙ୍କର ବ୍ୟାକରଣ ପଢ଼ା ଶେଷ ହୋଇଥିଲା। ସ୍ୱାଧ୍ୟାୟ କରି ଘରେ ପଢ଼ି ପଢ଼ି ସେ ପଣ୍ଡିତ ହୋଇଥିଲେ। କବି ଜୀବନର ମଧ୍ୟାହ୍ନରେ ନାନାବିଧ ସାମାଜିକ କାର୍ଯ୍ୟରେ ଆତ୍ମନିୟୋଗ କରିଥିବାର ପ୍ରମାଣ ମିଳେ। ଶିକ୍ଷା ପ୍ରତି ତାଙ୍କର ଅସୀମ ନିଷ୍ଠା ଥିବା ଜଣାଯାଏ। ୧୯୫୦ ମସିହା ପୂର୍ବରୁ ସେ ନବରଙ୍ଗପୁରରେ ନୈଶ ବିଦ୍ୟାଳୟର ସ୍ଥାପନା କରିଥିଲେ। ବୟସ୍କମାନଙ୍କୁ ସେ ଶିକ୍ଷା ଦେଉଥିଲେ। ଓଡ଼ିଶା ସହିତ ଜୟପୁର ଅଞ୍ଚଳ ମିଶ୍ରଣ ଆନ୍ଦୋଳନରେ ସେ ସକ୍ରୀୟ ନେତୃତ୍ୱ ନେଇ ନିଜର ଜାତୀୟତାବାଦୀ ଚେତନାର ପରିଚୟ ଦେଇଛନ୍ତି। ତାଙ୍କ ଉଦ୍ୟମରେ ନବରଙ୍ଗପୁରରେ ତତ୍କାଳୀନ 'ଚିତ୍ତ ରଞ୍ଜନ ଆଶ୍ରମ' ପ୍ରତିଷ୍ଠିତ ହୋଇଥିଲା ଓ ସେ ସୂତାକଟା ଶିଖାଉଥିଲେ ଏବଂ ଜନସାଧାରଣଙ୍କ ମଧ୍ୟରେ ପ୍ରଥମେ ଖବର କାଗଜ ପଠନର ସହା ଜାଗ୍ରତ କରାଇ ପାରିଥିଲେ। ଜାତବ୍ୟ ଧୋବଣ ସ୍ଥାପନ କରି ଦେଶୀ ଔଷଧ ବିତରଣ କରିବା, ଦିଶାରୀ ଓ ଗୁଣିଆମାନଙ୍କ କବଳରୁ କୁସଂସ୍କାରାଚ୍ଛନ୍ନ ଆଦିବାସୀମାନଙ୍କୁ ରକ୍ଷା କରିବା ଏକାନ୍ତ ଉଲ୍ଲେଖ ଯୋଗ୍ୟ ଏବଂ ଏଥିପାଇଁ ସେ ଜଣେ ସମାଜ ସଂସ୍କାରକ ଭାବେ ମଧ୍ୟ ବେଶ୍ ଖ୍ୟାତି ଅର୍ଜନ କରି ପାରିଥିଲେ।

କୋରାପୁଟ ପ୍ରତି ତାଙ୍କର ଶ୍ରଦ୍ଧା ଓ ମମତା ବେଶି ଥିଲା। କୋରାପୁଟର ଲୋକ ଗୀତକୁ ସର୍ବସାଧାରଣଙ୍କ ଗୋଚରକୁ ଆଣିବାରେ ସେ ଅଗ୍ରଣୀ ଥିଲେ। ଓଡ଼ିଆ ସାହିତ୍ୟର ଲୋକକଥା ଓ ଲୋକଗୀତର ବିଶିଷ୍ଟ ଗବେଷକ ଡକ୍ଟର କୁଞ୍ଜ ବିହାରୀ ଦାଶ ୰ ମଞ୍ଜୁଘୋଷଙ୍କ ସଂପର୍କରେ କହନ୍ତି :—

"ସଂଗ୍ରାହକ ଭାବେ ସେ ଅବିସ୍ମରଣୀୟ। ମୋ' ସଞ୍ଚୟନର ବହୁ ଆଗରୁ ସେ କୋରାପୁଟର ଲୋକଗୀତକୁ ସର୍ବ ସାଧାରଣଙ୍କ ଗୋଚରକୁ ଆଣିଥିଲେ। ତାଙ୍କର ଚାଖନା, ଧନ୍ଦା, ଚଇତ ପର୍ବ ଗୀତି, ସାଇଁ ଲୋଡ଼ି ଗୀତ ପଲ୍ଲୀଗୀତି ସଞ୍ଚୟନର, ତାଙ୍କ ସଂଗୃହୀତ କୋରାପୁଟ ଜିଲ୍ଲାର କାହାଣୀ ମୋ' ଲୋକଗଳ୍ପ ସଞ୍ଚୟନର ଅଙ୍ଗୀକୃତ ହୋଇଅଛି। ସଂଗ୍ରହ ଦିଗରେ ସେ ମୋର ଡାହାଣ ହାତ ସ୍ୱରୂପ ଥିଲେ।

(ଜୀବନୀ ଓ ଜୀବନ' ୧୯୭୭ ପୃଷ୍ଠା ୨୯୫)

କବିଙ୍କ ସାହିତ୍ୟକ ବିଭବର ଆଲୋଚନା ତାଙ୍କ ଲିଖିତ "ଚଇତ ପରବ" (ବାରମାସୀ)ରୁ ଆରମ୍ଭ କରାଯାଇପାରେ। ଏହି କ୍ଷୁଦ୍ର ପୁସ୍ତକାଟି କବିଙ୍କ ଚତୁର୍ଥ ସଂସ୍କରଣ ରୂପେ ପ୍ରକାଶିତ ହୋଇ ଏହାର ଜନପ୍ରିୟତାର ପ୍ରତିପାଦନ କରେ। ଅଶିକ୍ଷିତ ଆଦିବାସୀଙ୍କ ମୁଖରେ ବୋଲାଯାଉଥିବା ଗୀତର ଭାଷା, ଭାବ ଓ ବୃତ୍ତରେ ଏହା ଲିଖିତ। ବାରମାସର ପ୍ରକୃତିର ବର୍ଣ୍ଣନା ସହ ଆଦିବାସୀମାନଙ୍କ ଜୀବନଚର୍ଯ୍ୟାର ଅପୂର୍ବ ସମନ୍ୱୟ ଏଥିରେ ଦୃଷ୍ଟିଗୋଚର ହୁଏ। ଦିଆଳିର ଶେଷରେ ପଣ୍ଡ ମାସର ସଙ୍ଗୀତ ମୂର୍ଚ୍ଛନାର ଆରମ୍ଭ ହୋଇ, ଦଶହରାର ଶେଷ ଦିଆଳିର ଆରମ୍ଭ ଯାଏ ଏଥିରେ ଆଦିବାସୀ ଯୁବକ ଯୁବତୀଙ୍କ ପ୍ରେମ, ପ୍ରଣୟ, ଶୃଙ୍ଗାର, ମିଳନ ଜିଜ୍ଞାସା, ସୁଖ ଦୁଃଖ, ଅଭିମାନ, ପରସ୍ପରକୁ ଭଲ ପାଇବା ତଥା ଚାହିଁବାର ଆବେଗଗୁଡ଼ିକ ଶବ୍ଦ ଓ ଗୀତରେ ଚମତ୍କାର ଭାବେ ଫୁଟି ଉଠିଛି। ଯାହା ଫଳରେ ଏହି ପୁସ୍ତିକାକୁ ପାଠକ ଏକା ନିଶ୍ୱାସରେ ପାଠ କରିପାରେ। ଅନେକ ଦେଶଜ ତଥା ସ୍ଥାନୀୟ ଶବ୍ଦର ବ୍ୟବହାର ପୁସ୍ତକର ସାହିତ୍ୟିକ ମୂଲ୍ୟ ବୃଦ୍ଧି କିଛି। ଯଥା, ବେଢ଼ା, କୁପା, ଡର, କୋଦମାଳି, ଗମାତ, ଗୀତି - କୁଡ଼ିଆ, ହୁଳ, ଲାଡ଼, ଛେକୁଅ, ବଢ଼ ଖରା, ବୋଡ଼ା ବେଟା, ଭାରିଆସ, ନିଜାଣି, ସୁସାରେ, ଭାଇଲା, କାମୁଣି, ଠେଙ୍ଗୁଆ ପ୍ରଭୃତି।

"ଚଇତ ପରବ"ର କେତୋଟି ମନଛୁଆଁ ସଙ୍ଗୀତ ଲହରୀ ବିଦଗ୍ଧ ପାଠକଙ୍କ ଅବଗତି, ଆଲୋଚନା ଉପଭୋଗ ପାଇଁ ଏଠାରେ ଉଦ୍ଧୃତ କରାଗଲା :—

**ପୁ -** ଦିଆଳିର ଶେଷ ହେଲା ପଣ୍ଡ ମାସ
ବେଢ଼ାରେ ପାଚିଲା ଧାନ
ମୋ ଲାଗେ ଆସିଲେ ନିଜିର ଧନ
ସୁଖରେ କାଟିବା ଦିନ।
ଧାନ କଟା ଲାଗି ହାତରେ ଇଳା
ଡର ଲାଗେ ମନ ଗଲା।

**ସ୍ତ୍ରୀ -** ଦିଆଳିର ଶେଷ ହେଲା ପଣ୍ଡ ମାସ
ବେଢ଼ାରେ ପାଚିଲା ଧାନ
ଆସିବାକୁ ମନ ମୋ ନିଜା ଧନ
ଥିବିର କରାବେ ପ୍ରାଣ !
ଧାନକଟା ଲାଗି ହାତରେ ଇଳା
ଏକଲା ଏ ନିଜି ପିଲା।

ପୁ -    ଗଲା ପୁଷ ମାସ ହେଲା ମାଘ ମାସ
କୁନ୍ଦ ଫୁଲ ଫୁଟେ ବଣ
କୁନ୍ଦ ଫୁଲ ଗୁନ୍ଥି ଗଳା ରତନ
ପିନ୍ଧାଇ ଦେବାକୁ ମନ।
କୁନ୍ଦ ଫୁଲ ତୋଳି ଗୁନ୍ଥିଲି ସୋରା
ନିନିତି କରନ୍ତି ହାରା।

ସ୍ତ୍ରୀ -    ଗଲା ପୁଷ ମାସ ହେଲା ମାଘ ମାସ
କୁନ୍ଦ ଫୁଲ ଫୁଟେ ବଣ
ଯୁବା ଦେହ ଧରି କାନ୍ତ ନ ଥିବାରୁ
ତୁଚ୍ଛାରେ ଯାଉଛି ଦିନ।
କୁନ୍ଦ ଫୁଲ ତୋଳି ଗୁନ୍ଥିଲି ସୋରା
କରମରେ ଲେଖା ପରା ?

ନାୟିକାର ମୁଖରୁ ନିର୍ଗତ ପଦିଏ କଥାରେ ନାୟକର ପେଟ ପୂରିଯାଏ। ଏଇ କଥା ବଇଶାଖ ମାସ ଶେଷରେ ଲାଣ୍ଡି ମାସର ଗୀତରେ କିପରି ଫୁଟିଛି ଦେଖନ୍ତୁ :—

ପୁ -    ବଇଶାଖ ଶେଷ ହେଲା ଲାଣ୍ଡି ମାସ
ଛେଚୁଅଛି ବଡ଼ ଖରା
ନିନିର ତୁଣ୍ଡରୁ ବଚନ ଶୁଣି
ନଖାଇ ପେଟ ପୂରିଲା
ପାଣି ନେବା ଲାଗି ବନ୍ଧରେ ଚୁଆଁ
କରା ବନ୍ଧୁ ମୋତେ ଦୟା॥

ସ୍ତ୍ରୀଟି ଏହାପରେ ଉତ୍ତର ଦେଉଛି :-

ସ୍ତ୍ରୀ -    ବଇଶାଖ ଶେଷ ହେଲା ଲାଣ୍ଡି ମାସ
ଛେଚୁଅଛି ବଡ଼ ଖରା
ସ୍ତ୍ରୀଳକି ପୁରୁଷ ପୁରୁଷକୁ ସ୍ତ୍ରୀରି
ମୁକୁତା ଗୁନ୍ଥିଲା ପରା।
ପାଣି ନେବା ପାଇଁ ବନ୍ଧରେ ଚୁଆଁ
କିଠାରେ ନାହିଁ ମାୟା।

ପରସ୍ପରକୁ ଦେଇ ଦେବାରେ ହିଁ ମିଳନର ଶ୍ରେଷ୍ଠତା। ଭଲ ପାଇବାର ଅନାବିଳ ଅନୁରାଗର ଚିହ୍ନ ନିମ୍ନୋକ୍ତ ପଂକ୍ତିରୁ ସହଜରେ ଅନୁମେୟ :—

ପୁ -    ଅଷାଢ଼ ସରିଲା ଶରାବଣ ହେଲା
ପାଣି ମାରିଗଲା ଝାଇଁ
ସୁନା ଖଣ୍ଡ ପରି ଦେହ ଧରିଛୁ
କାହାକୁ ଦେବାର ପାଇଁ।
କାଉ କୋଇଲିର ଗଛରେ ବସା
ଦେଖିବା ଲୋକର ଆଶା।

ସ୍ତ୍ରୀ -    ଆଷାଢ଼ ସରିଲା ଶରାବଣ ହେଲା
ପାଣି ମାରିଗଲା ଝାଇଁ
ସୁନାଖଣ୍ଡ ପରା ଦେହ ଧରିଛି
କାନ୍ତକୁ ଦେବାର ପାଇଁ।
କାଉ କୋଇଲିର ଗଛରେ ବସା
କିଏ ପୂରାଇବ ଆଶା ?

ଏହି ପଂକ୍ତିକାର ଶେଷ ପଂକ୍ତିରେ ପ୍ରେମିକାର ସମର୍ପଣ ଭାବ ଏକାନ୍ତ ହୃଦୟସ୍ପର୍ଶୀ।

ସ୍ତ୍ରୀ -    ଦଶରାର ଶେଷ ଦିଆଲିର ମାସ
ପାଚିଗଲା ଛୋଟ ଧାନ
ଆଜିଠାରୁ ବନ୍ଧୁ ମୋ' ଦେହ ପ୍ରାଣ
ତୋତେ କଲି ସମର୍ପଣ
କାମୁଣି କାଟିବା ବେଢ଼ାରେ ଯାଇ
ମେଲାଣି ହେଲିବେ ମୁହିଁ।

କବି ମଞ୍ଜୁଘୋଷ ତ୍ରିପାଠୀଙ୍କ ଅନ୍ୟତମ ଶ୍ରେଷ୍ଠ କୃତି ହେଉଛି - 'ଋତୁ ସଂହାର'। ମହାକବି କାଳିଦାସଙ୍କ ମୂଳ ସଂସ୍କୃତର ପଦ୍ୟାନୁବାଦ। ଋତୁ ସଂହାରର ଅନୁବାଦକ ଓ ପ୍ରକାଶକ ହେଉଛନ୍ତି କବି ନିଜେ। ଏହା ୧୯୪୧ରେ ପ୍ରଥମେ ପ୍ରକାଶିତ। ଅନୁବାଦ ହେଲେବି କବିଙ୍କ ମୌଳିକତା ପାଣ୍ଡିତ୍ୟ, ଭାଷା, ଶୈଳୀ, କବିଙ୍କ ସାହିତ୍ୟିକ ପ୍ରତିଭା ପରିଚୟ ଦିଏ। ଏହି ବହିର ପ୍ରଚ୍ଛଦପଟ ଉପରେ କବି ଲେଖିଛନ୍ତି, ''ଏହି ବହିରୁ ଲବ୍ଧ ଧନର ଅର୍ଦ୍ଧେ ବ୍ରିଟିଶ ସରକାରଙ୍କ ଯୁଦ୍ଧ ପାଣ୍ଠିକି ଦିଆଯିବ।'' ଏହା ତତ୍କାଳୀନ ଓଡ଼ିଶାର ଗଭର୍ଣ୍ଣର ସାର୍ ଜନ୍ ଅଟେନ୍ ହବାକ୍ KCSI ଙ୍କୁ ଉତ୍ସର୍ଗୀକୃତ।

ଋତୁ ସଂହାରର ମୁଖବନ୍ଧରେ ପ୍ରକାଶିତ କେତେକ ମହନୀୟ ମତାମତ ଋତୁସଂହାରର ମୂଲ୍ୟ ଅଧିକ ସମୃଦ୍ଧ କରିଥାଏ। ସେଥିରୁ କେତୋଟି ଉଲ୍ଲେଖ କରାଗଲା।

ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ ଏମ୍.ଏ., ତତ୍କାଳୀନ Member, Servants of India Society ଙ୍କ 9.1.1940ରେ ପ୍ରଦତ୍ତ ଅଭିମତ ହେଲା :—

Srijut Manju Ghose Tripathy has kept intact many of the words and poetic expressions that have been used by Kalidas. This gives a flavour of its own. The language of poetry is full of innumerable suggestions, and hence, the words used in poetry have a peculiar charm. Rutu Samhara in Oriya by srijut, Manju Ghose Tripathy retains that charm."

"Srijut manju Ghose Tripathy is to be congratulate on his attempt though amidst difficulties and living far away from cultural centers, he has kept up the flame of his life by trasting to literature very faithfully. Srijut manju Ghosh Tripathy's CHAITA PARVA was a distinct contribution to oriya literature and the present translation of Rutu samhara by him seems to me to be no less.

ଋତୁ ସଂହାର'ର ଆମ୍ ପ୍ରକାଶ ଅବସରରେ ଜୟପୁର ସମସ୍ଥାନର ପ୍ରଧାନ ପଣ୍ଡିତ ସଂସ୍କୃତି ସୂର୍ଯ୍ୟବଂଶାବଳି ଏବଂ ଶତାର୍ଥପଦ୍ୟ ଲେଖକ ଶ୍ରୀ ମପୋଧ୍ୟାୟ ବିଦ୍ୟାଭୂଷଣ ରାମନାଥ ନନ୍ଦଙ୍କ ୨-୨-୧୯୪୦ ମସିହାରେ ପ୍ରଦତ୍ତ ଅଭିମତ ଆଜି ଅକ୍ଷରେ ଅକ୍ଷରେ ସତ ହୋଇଛି। କବି ଅମର ଓ ଚୀର ସ୍ମରଣୀୟ ହୋଇଛନ୍ତି। ଶ୍ରୀଯୁକ୍ତ ନନ୍ଦଙ୍କ ସେଦିନର ଉକ୍ତି ଥିଲା :-

''ଏହା ଉତ୍କଳ ସାହିତ୍ୟ ସମାଜରେ ସୁପ୍ରତିଷ୍ଠିତ ହୋଇ ଚୀରଦିନ ପର୍ଯ୍ୟନ୍ତ ଭାଷା ଏବଂ କବିତାର ଉନ୍ନତ୍ୟ ସମ୍ପାଦନ ଦ୍ଵାରା ଅନୁବାଦକ କବି ମହାଶୟଙ୍କର ମହୋପକାରିତାକୁ ଅମର ଭାବେ ରଖିବ - ଏହା ମୁଁ ଭାବେ।''

ଉତ୍କଳ ସାହିତ୍ୟ ରାଜ୍ୟରେ ସିଦ୍ଧହସ୍ତ ଶିଳ୍ପୀ ଓଡ଼ିଶା ବ୍ୟବସ୍ଥାପକ ସଭାର ତତ୍କାଳୀନ ସଦ୍ୟ ଜଗବନ୍ଧୁ ସିଂହ ମହାଶୟ 'ଋତୁ ସଂହାର' ପଢ଼ି ଅଭିମତ ଦିଅନ୍ତି :—

'ଋତୁ ସଂହାର ମହାକବି କାଳିଦାସଙ୍କର ଗୋଟିଏ ଅତି ସୁନ୍ଦର କାବ୍ୟ। କାଳିଦାସ ପ୍ରକୃତି ଚିତ୍ର କରିବାରେ ସିଦ୍ଧହସ୍ତ ଏବଂ ପ୍ରକୃତି ଚିତ୍ରିତା ବିଷୟରେ ସେ ଜଣେ ଅଦ୍ଵିତୀୟ ଶିଳ୍ପୀ। ସେ କାବ୍ୟ ସଂସ୍କୃତି ଭାଷାରେ ଲେଖା ବିଶାରଦ ଅନୁବାଦକ ନ ହେଲେ ଭାଷାନ୍ତର କରି ସଂସ୍କୃତି ଭାଷ୍ୟର ମାଧୁର୍ଯ୍ୟ ରକ୍ଷା କରି ପାରିବ ନାହିଁ। ଲେଖକ ସେହି କାବ୍ୟକୁ ଓଡ଼ିଆ ଭାଷାରେ ଅନୁବାଦ କରି ଅଛନ୍ତି। ମୁଁ ସେ ଅନୁବାଦରୁ କେତେକ ପଢ଼ିଲି। ଦେଖୁଛି ଲେଖକ ବେଶ୍ ସୁନ୍ଦର ଭାବରେ ସଂସ୍କୃତ ଭାଷାର ମାଧୁର୍ଯ୍ୟ ରକ୍ଷାକରି ଅନୁବାଦ କରିଛନ୍ତି। ଆଶାକରେ ଏ ଲେଖାଟି ପାଠକ ସାଧାରଣଙ୍କ ମଧ୍ୟରେ ସମାଦୃତ ହେବ।''

ସିଂହଙ୍କ ଉକ୍ତି ସତ ହୋଇଛି। କବି ମଞ୍ଜୁଘୋଷଙ୍କ ଋତୁ ସଂହାର ଲୋକପ୍ରିୟତା ଅର୍ଜନ କରିପାରିଛି ଓ କବିଙ୍କ ଅନ୍ୟନ୍ୟ ପ୍ରତିଭାର ଜ୍ଵଳନ୍ତ ସ୍ଵାକ୍ଷର ହୋଇ ରହିଛି।

ଉତ୍କଳର ଉଚ୍ଚ ପ୍ରତିଷ୍ଠା ସାହିତ୍ୟିକ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ପ୍ରଣେତା ଓ ପ୍ରକାଶକ ରାୟବାହାଦୁର ଗୋପାଳ ଚନ୍ଦ୍ର ପ୍ରହରାଜ ମହାଶୟଙ୍କ ଅଭିମତ ହେଲା :-

''ନବରଙ୍ଗପୁରର ଶ୍ରୀଯୁକ୍ତ ମଞ୍ଜୁଘୋଷ ତ୍ରିପାଠୀଙ୍କ ରଚିତ କାଳିଦାସଙ୍କ ପ୍ରସିଦ୍ଧ ଖଣ୍ଡ କାବ୍ୟ ଋତୁ ସଂହାରର ଓଡ଼ିଆ ପଦ୍ୟାନୁବାସର ପାଣ୍ଡୁଲିପି ଦେଖିଲି। କାଳିଦାସଙ୍କ ପଦବିନ୍ୟାସ ଜନିତ ମାଧୁରୀ କାବ୍ୟ ଜଗତରେ ବିରଳ। ତାଙ୍କ ପଦ ବିନ୍ୟାସ ଭଙ୍ଗୀକୁ ଯଥା ସମ୍ଭବ ଅକ୍ଷୁର୍ଣ୍ଣ ରଖି ତ୍ରିପାଠୀ ମହାଶୟ ଏ ଅନୁବାଦ କରି ଅଛନ୍ତି ଓ ଏତଦ୍ଵାରା ମୂଳ କାବ୍ୟର ଲାଳିତ୍ୟ ଓଡ଼ିଆ ଭାଷାରେ ମଧ ଫୁଟି ଉଠିଚି। ପୂର୍ବତନ ଉତ୍କଳରୁ ବହୁ ଦୂରରେ ଓ ବର୍ତ୍ତମାନ ଉତ୍କଳ ପ୍ରଦେଶର ଏକ କୋଣରେ ଥାଇ ଶ୍ରୀ ମଞ୍ଜୁ ଘୋଷ ତ୍ରିପାଠୀ ମହାଶୟ ମାଆ ସରସ୍ଵତୀଙ୍କ ସେବାରେ ନିଷ୍ଠା ସହକାରେ ଲାଗି ଅଛନ୍ତି। ଏଥି ପୂର୍ବରୁ ନୀତିରତ୍ନ ମଞ୍ଜୁଷା, ମୁକ୍ତିମାଳା, ଜୟପୁର ରାଜ୍ୟସ୍ଥ ଗୁପ୍ତେଶ୍ଵର ଶିବଲିଙ୍ଗଙ୍କ ବର୍ଣ୍ଣନା ଓ ଆଦିମ ନିବାସୀମାନଙ୍କର ପ୍ରଚଳିତ ଧନ୍ଦା (ପ୍ରହେଳିକା) ମାନ ଓ ଚଇତ ପରବ ପୁସ୍ତିକାଗୁଡ଼ିକ ପ୍ରକାଶ କରି, ସେ ଉତ୍କଳ ସାହିତ୍ୟ ରାଜ୍ୟରେ ସୁପରିଚିତ ହୋଇ ଅଛନ୍ତି। ବର୍ତ୍ତମାନ ଏ ଅନୁବାଦ ଦ୍ଵାରା ତାଙ୍କ କୃତିତ୍ଵ ସୁପ୍ରକଟିତ ହୋଇ ଅଛି। ଏ ଗ୍ରନ୍ଥକୁ ସେ ଗୁଣ ଚିହ୍ନରା ସର୍ ଜନ୍ ହବାଲ୍ଙ୍କ ନାମରେ ଉତ୍ସର୍ଗ କରି ପୂଜ୍ୟ ପୂଜା କରି ଅଛନ୍ତି। ଏହା ଜାଣି ମୁଁ ଅତୀବ ସୁଖୀ ହୋଇ ଅଛି। ମଞ୍ଜୁ ଘୋଷ ବାବୁ ଉତ୍କଳର କୋରାପୁଟ ଅଞ୍ଚଳର ଆଦିମ ନିବାସୀମାନଙ୍କ ଅଧ୍ୟୁଷିତ ଅରଣ୍ୟମୟ ନିଭୃତ କନ୍ଦରରେ ଲୁଚି ରହିଥିବା ମୌଳିକ ସାରସ୍ଵତ ସମ୍ପଦଗୁଡ଼ିକ ବାହାର କରି ଓଡ଼ିଆ ସାହିତ୍ୟର ପ୍ରାକୃତି ଶ୍ରୀ ବୃଦ୍ଧି ସାଧନ କରନ୍ତୁ ଓ ଏଥିପାଇଁ ଈଶ୍ଵର ତାଙ୍କୁ ଦେହ ବଳ, ମନୋବଳ, ଧନ ବଳ ଓ ଆୟୁର୍ବଳ ଦିଅନ୍ତୁ; ମୋର ପ୍ରଭୁଙ୍କର ଓ ଗୁରୁଦେବଙ୍କ ଚରଣରେ ଏତିକି ଅଳି।''

ଋତୁ ସଂହାରରେ ସର୍ବମୋଟ ୬ଟି ସର୍ଗ ଅଛି। ପ୍ରଥମ ସର୍ଗ (ଗ୍ରୀଷ୍ମ) ୨୮ ପଦ, ଦ୍ଵିତୀୟ ସର୍ଗ (ବର୍ଷା) ୨୮ ପଦ, ତୃତୀୟ ସର୍ଗ (ଶରତ) ୨୬ ପଦ, ଚତୁର୍ଥ ସର୍ଗ (ହେମନ୍ତ) ୧୮ ପଦ, ପଞ୍ଚମ ସର୍ଗ (ଶିଶିର) ୧୬ ପଦ ଏବଂ ଶେଷ ଷଷ୍ଠ ସର୍ଗ (ବସନ୍ତ) ୨୮ ପଦ ବିଶିଷ୍ଟ। ଏହାର ପ୍ରତ୍ୟେକ ପଦ ୬ ପାଦ ବିଶିଷ୍ଟ। ପଦର ପ୍ରଥମ, ଦ୍ଵିତୀୟ, ତୃତୀୟ ଓ ଚତୁର୍ଥ ପାଦ। ଅକ୍ଷର ବିଶିଷ୍ଟ, ପଞ୍ଚମ ପାଦ ୬ ଅକ୍ଷର ଓ ଶେଷ ପାଦ। ଅକ୍ଷର ବିଶିଷ୍ଟ ସମସ୍ତ ସର୍ଗ ଗୋଟିଏ ରାଗ ଓ ତାଳରେ ଲିଖିତ। ଏହାର ଭାଷା ଶୁଦ୍ଧ ଓ ପାଣ୍ଡିତ୍ୟ ପୂର୍ଣ୍ଣ। ଏଥିରେ ତତ୍ସମ, ତଦ୍ଭବ ଶବ୍ଦର ପ୍ରୟୋଗ ବେଶୀ ହୋଇଛି। ବିଦେଶୀ ଭାଷାର ପ୍ରଭାବ ଆଦୌ ନାହିଁ। ପ୍ରତ୍ୟେକ ପଦକୁ ସୁଲଳିତ ସ୍ଵରରେ ଗାନ କରାଯାଇପାରେ। ଷଡ଼୍ଋତୁର ପ୍ରାକୃତିକ, ପରିବେଶଗତ ବର୍ଣ୍ଣନା ସହିତ ଏହାର ମାନବ ଜୀବନ ଓ ଆଚରଣଗତ ପ୍ରଭାବ - ପ୍ରତିକ୍ରିୟା ଅତି ସୁନ୍ଦର ଭାବେ ପ୍ରକାଶିତ ହୋଇଛି। ପ୍ରତ୍ୟେକ ସର୍ଗର ଶେଷ ପଦରେ ଶୁଭ କାମନା ସଦିଛି। ଉଦ୍ଭାସିତ କରୁଛି ଏଇଭଳି :-

''ପାଟଳୀ-ବାସ, ପଦ୍ମପୂର୍ଣ୍ଣ ବନ
ସୁଖକର-ଶୀତ-ସଲିଳ-ସ୍ନାନ।
ସେବନଯୋଗ୍ୟ ଚନ୍ଦ୍ରକର, ହାରା
କାମିନୀ, ଲଳିତ ସଙ୍ଗୀତି, ଦ୍ଵାରା।
ଅଟ୍ଟାଳିକା ପରେ
ଗ୍ରୀମେ ରାତି ତବ ଯାଉ ସୁଖରେ।
(୧ମ ସର୍ଗ - ୨୮ ପଦ)

ବହୁ ପ୍ରକାର ଗୁଣେ ରମଣୀୟ
କାମିଜନଙ୍କର ପରମ ପ୍ରିୟ।
ତରୁଲତାଙ୍କର ବନ୍ଧୁ ଉଦାର
ପ୍ରାଣ ସମାନ ପ୍ରାଣୀମାନଙ୍କର।
ଏ ବର୍ଷା ସମୟ
ପୂରାଉ ତୁମ୍ଭର ଅଭୀଷ୍ଟ-ଚୟ।
(୨ୟ ସର୍ଗ-୨୮ ପଦ)

ପଦ୍ମମୁଖୀ ନୀଳୋତ୍ପଳ - ଲୋଚନା
ବିକଶିତ-ନବ-କାଶ-ବାସନା ।
କୁମୁଦ-ରୁଚିର-କାନ୍ତି ଶରତ
ସମଦା ପ୍ରମଦ୍ୟ ପ୍ରାୟ ସଂତତି ।
ତୁମ୍ଭମାନଙ୍କର
ମାନସେ ପ୍ରମୋଦ କରୁ ସଂଚାର ।
(୩ୟ ସର୍ଗ - ୨୬ ପଦ)

ବିବିଧ ଗୁଣେ ଯେ ଅଟ ସୁନ୍ଦର
ମନୋହାରୀ ଯେ ନାରୀମାନଙ୍କର ।

ପକ୍ୱ ଧାନ୍ୟେ ଗ୍ରାମ-ବ୍ୟାକୁଳ କାରୀ
ଅତି ମନୋଜ୍ଞ - କୌଞ୍ଚମାଳା ଧାରୀ ।
ହେମନ୍ତ ସମୟ
ବିତରୁ ତୁମ୍ଭର ସୁଖ - ନିଶ୍ଚୟ ।
(୪ର୍ଥ ସର୍ଗ - ୧୮ ପଦ)

ଜନ୍ମାଏ ଯେ ବହୁ ଖଣ୍ଡ ସାନ୍ଦର

ସ୍ୱାଦୁ ଶାଳୀ ଧାନ୍ୟ, ଇକ୍ଷୁ - ନିକର ।
କରାଏ ଯେ ଜାତ କାମ - ପ୍ରତାପ
ବିରହୀ ଜନେ ଯେ ଦିଏ ସଂତାପ ।
ସେ ଶିଶିର କାଳ
ଅବିରତ କରୁ ତୁମ୍ଭ ମଙ୍ଗଳ ।
(୫ ମ ସର୍ଗ - ୧୬ ପଦ)

ଆମ୍ର-ମଞ୍ଜରୀ ଯା' ଶର ନିପୁଣ
କିଂଶୁକ ଯା' ଧନୁ, ଭୃଙ୍ଗାଳି ଗୁଣ ।
ମତ୍ତ ଗଜ ଯାର ମଳୟାନିଳ
ଶଶି ସିତ-ଛତ୍ର, ବନ୍ଦୀ କୋକିଳ ।

ବିଜୟୀ ସେ ସ୍ମର
ମଧୁ-ସଖା କରୁ ହିତ ତୁମ୍ଭର ॥
(୬ଷ୍ଠ ସର୍ଗ - ୨୮ ପଦ)

କବି ସ୍ରଷ୍ଟା ଓ ଦ୍ରଷ୍ଟା । ସେ ସମାଜର ନିଃସ୍ୱାର୍ଥପର ହିତାକାଂକ୍ଷୀ ବନ୍ଧୁ । କବି ମଞ୍ଜୁଘୋଷ ନିଜସ୍ୱ ସାହିତ୍ୟ କୃତି ମାଧ୍ୟମରେ ଏକ ନୀତି ପୂର୍ଣ୍ଣ, ସୁସ୍ଥ ସମାଜର ଅଭିଳାଷ ପୋଷଣ କରନ୍ତି । 'ନୀତିରତ୍ନ ମଞ୍ଜୁଷା' ଓ 'ନାମାବଳୀ' ମାଧ୍ୟମରେ । 'ନୀତିରତ୍ନ ମଞ୍ଜୁଷା' ପ୍ରଥମେ ୧୯୩୭ ମସିହାରେ ପ୍ରକାଶିତ ହୁଏ । ଦ୍ୱିତୀୟ ସଂସ୍କରଣ ଭାବେ ୧୯୬୬ ମସିହାରେ ଏହା ପୁନଃ ପ୍ରକାଶିତ ହୋଇଛି । ୨୨-୯-୧୯୩୨ ମସିହାରେ ଏହାର ସାହିତ୍ୟିକ ମୂଲ୍ୟବୋଧ ସଂପର୍କରେ ବ୍ରହ୍ମପୁର ଖଲ୍ଲିକୋଟ କଲେଜ ଉତ୍କଳ ସାହିତ୍ୟାଧ୍ୟାପକ ପଣ୍ଡିତ ଶ୍ରୀ ଲିଙ୍ଗରାଜ ମିଶ୍ର ଶାସ୍ତ୍ରୀ, କାବ୍ୟ ତୀର୍ଥ, ସଂଖ୍ୟତୀର୍ଥ, ସାଂଖ୍ୟ ରତ୍ନ ମହାଶୟ ଲେଖନ୍ତି :—

"ପଣ୍ଡିତ ଶ୍ରୀ ମଞ୍ଜୁଘୋଷ ତ୍ରିପାଠୀ ଉତ୍କଳର ସାହିତ୍ୟିକ ସାଧାରଣର ଅପରିଚିତ ନୁହନ୍ତି । ସେ ଅନେକ କାଳରୁ "ଆଶା' ପ୍ରଭୃତି ପତ୍ରିକାରେ ସାମୟିକ ଲେଖା ପ୍ରକାଶିତ କରି ଅଛନ୍ତି । ବିଶେଷତଃ ସେ ଜୟପୁର ସୁଦୁର୍ଗମ ଆରଣ୍ୟକ ଅଞ୍ଚଳର (ନବରଙ୍ଗପୁର ଅଧିବାସୀ ହେଲେ ହେଁ ଓଡ଼ିଆ ସାହିତ୍ୟର ଅନୁଶୀଳନରେ ବରାବର ନିବଦ୍ଧ ଶ୍ରଦ୍ଧା ଥାଆନ୍ତି । ଏଥି ପୂର୍ବେ ତାହାଙ୍କ ଲିଖିତ ଗୁପ୍ତେଶ୍ୱର କାହାଣୀ, ଗୋପୀଗୀତାର ଅନୁବାଦ ପ୍ରଭୃତି ପ୍ରକାଶିତ ହୋଇଅଛି । ବର୍ତ୍ତମାନ ତାହାଙ୍କର ନୈତିକ ଦୃଷ୍ଟି ସଂପ୍ରସାରଣ ଯୋଗୁଁ ନୀତିରତ୍ନ ମଞ୍ଜୁଷା ନାମକ ଶତପଦ୍ୟମୟ ଗ୍ରନ୍ଥ ପାଣ୍ଡୁଲେଖା ଅବସ୍ଥାରେ ଦେଖିବାକୁ ମିଳେ । ଏହି ଗ୍ରନ୍ଥରେ ଅର୍ଥଗତ୍ୟା ନୈତିକ ସନ୍ଦର୍ଭ ଯେପରି ସୁଲଭ ସେପରି ମାର୍ଜିତ ରୁଚି, ପରିସ୍ଫୁଟ, ଭାଷା ସରଳ, ସୁନ୍ଦର ଓ ଚିତ୍ତାକର୍ଷକ । ଶ୍ରୀ ବୃଦ୍ଧି ଅବଶ୍ୟମ୍ଭାମୀ । ଅତଏବ ଏହି ଲେଖାର ପ୍ରକାଶ ନୀରନ୍ତରାୟ ହେଉ ବୋଲି ମୁଁ କାମନା କରେ ।"

"ନୀତିରତ୍ନ ମଞ୍ଜୁଷା"ରେ ଶହେଟି ପଦ (ନୀତିବାଣୀ) ପ୍ରଦତ୍ତ । ପ୍ରଥମ ପାଞ୍ଚୋଟି ପଦରେ ରଜାଙ୍କ ମହିମା ସଂପର୍କିତ ଉପଦେଶାତ୍ମକ ବାଣୀ ଲେଖା ହୋଇଛି । ଏହାର କେତେକ ପଦରେ ଚାଣକ୍ୟ ନୀତିର ଭାବଗତ ଐକ୍ୟ ଓ ପ୍ରଭାବ ନିହିତ । ତନ୍ମଧ୍ୟରୁ ଗୋଟିଏ ଦୃଷ୍ଟାନ୍ତ :—

"କାର୍ଯ୍ୟରେ ପଠାଇ ଭୃତ୍ୟକୁ ଚିହ୍ନିବ
ଦୁଃଖ କାଳେ ବାନ୍ଧ ବନ୍ଧୁ
ସମ୍ପତ୍ତି ନାଶରେ ଭାର୍ଯ୍ୟାକୁ ଚିହ୍ନିବ
ବିପତ୍ତି କାଳେ ମିତ୍ରକୁ ।"

ଓଡ଼ିଆ ସାହିତ୍ୟର ନୈତିକ ଦରବାରର କବିଙ୍କ ନିମ୍ନୋକ୍ତ ନୀତିବାଣୀ ଚିରସ୍ମରଣୀୟ ହୋଇ ରହିବ :—

"ଗୁଣି ଜନ ସଙ୍ଗେ ସାଙ୍ଗ ହେଲେ
ଲୋକ ହୋଇଯାଏ ଗୁଣ ବାନ
ଦୁଧରେ ମିଶିଲା ପାଣିର କି ଆଉ
ରହିଥାଏ ପୂର୍ବ ସ୍ଥାନ ।

"ମାଟି ହାଣ୍ଡି ପରି ଦୁର୍ଜନର ସଙ୍ଗ
ସୁଖେ ଭାଙ୍ଗେ ଯୋଡ଼ି ନୁହେଁ
ସୁନା ହାଣ୍ଡି ପରି ସୁଜନର ସଙ୍ଗ
କଷ୍ଟେ ଭାଙ୍ଗେ ଯୋଡ଼ି ହୁଏ ।

ଆତ୍ମ ସନ୍ତୋଷ ହିଁ ଜୀବନର ଶ୍ରେଷ୍ଠ ବ୍ରତ । ମନକୁ ନିୟନ୍ତ୍ରଣାଧିନ କରି ପାରିଲେ ସୁଖ ପ୍ରାପ୍ତି ହୋଇଥାଏ । ସମାଜର ଲୋକମାନଙ୍କୁ ସଂଯତ ଜୀବନ ଯାପନ ପାଇଁ କବି ମଞ୍ଜୁଘୋଷ କହନ୍ତି :—

"ଯାହାର ମାନସ ସନ୍ତୁଷ୍ଟ ଅଟଇ
ସକଳ ସମ୍ପତ୍ତି ତାର
ଜୋତା ପାଦେ ଥିଲେ ସକଳ ପୃଥିବୀ
ଚର୍ମାବୃତ ପରକାର ।"

"ଧନାନୀ ଜୀବିତଂ ଚୈବ ପରାର୍ଥେ ପ୍ରାଜ୍ଞ ଉସଜେତ୍
ଏହି ମୂଲ୍ୟବୋଧ କବି ମଞ୍ଜୁଘୋଷଙ୍କ ଲେଖନୀରେ ସରଳ ପଦାବଳୀରେ ପ୍ରକାଶିତ ହୋଇଛି ଏଇଭଳି :—

"ନିଜର ଜୀବନ ଆଜିର ଯେ ଧନ ଏ ଦୁଇକଥା ପଣି
ପର ଉପକାରରେ ଛାଡ଼ିବାର ଭଲ ବିନାଶ ଯୋଗ୍ୟ ଏ ସତ୍ୟ।"

ବାସ୍ତବିକ କବିଙ୍କ ନୀତିରତ୍ନ ମଞ୍ଜୁଷା ଓଡ଼ିଆ ସାହିତ୍ୟର ଅବିସ୍ମରଣୀୟ କୃତି।

ମଞ୍ଜୁଘୋଷ ତ୍ରିପାଠୀଙ୍କ "ନାମାବଳୀ"ର ହିନ୍ଦୀ ସଂସ୍କରଣ ୧୯୬୫ ମସିହାରେ କବି ପୁତ୍ର ଶ୍ରୀ ଭାଇଚନ୍ଦ୍ର ତ୍ରିପାଠୀଙ୍କ ଦ୍ୱାରା ପ୍ରକାଶିତ ହୋଇଛି। ଏଥିରେ ଶ୍ରୀଭକ୍ତ ନାମାବଳୀ, ଶ୍ରୀ ଶିବ ନାମାବଳୀ, ଶ୍ରୀ ବିଷ୍ଣୁ ନାମାବଳୀ, ଶ୍ରୀ ଦୁର୍ଗା ନାମାବଳୀ ସନ୍ନିବେଶିତ। ବିଭିନ୍ନ ନାମାବଳୀର ଶେଷ ପଦରେ କବିଙ୍କ ଲିଖିତ ନିମ୍ନୋକ୍ତ ପଦାବଳୀ ଜନ ସମାଜକୁ ଆଧ୍ୟାତ୍ମିକ ଦିଗରେ ପରିଚାଳିତ କରାଇବା ପାଇଁ ବିହିତ ପ୍ରେରଣା ଦେଇଥାଏ। ଯଥା :—

"ମୋ'ଠାରୁ ଭକ୍ତ ବଡ଼ ବୋଲି
ଶ୍ରୀମୁଖେ ଭାଷିଛନ୍ତି ହରି
ଭକତ ନାମ ସଂକୀର୍ତ୍ତନ
କଲେ ଅଚିରେ ବାଞ୍ଛାପୂର୍ଣ୍ଣ॥"

କଳିରେ ନାମ ମାତ୍ର ସାର
ଲେଖି ଅଛନ୍ତି ଗ୍ରନ୍ଥକାର।
ଭକ୍ତି ବିଶ୍ୱାସେ ନାମ ଗୁଣି
ସଂସାରୁ ତରିଯିବେ ପ୍ରାଣୀ।"

""ବିଶ୍ୱାସ ବିନା କର୍ମ ଯେତେ
ଫଳ ନ ଫଳେ କଦାଚିତେ
କଳିରେ ନାମ ସଂକୀର୍ତ୍ତନ
କେବଳ ଅଟଇ ପ୍ରଧାନ।"

"କଳିରେ ଦୁର୍ଗା ନାମ ସାର
ଭଜିଲେ ମନ କରି ଧୀର।
କାମନାମାନ ପରିପୂର୍ଣ୍ଣ
ହୁଏ ଜାଣନ୍ତି ବିନୁ ବିନ।

କବି ମଞ୍ଜୁ ଘୋଷଙ୍କ କାବ୍ୟ କବିତାର ଭାଷା ଅତ୍ୟନ୍ତ ସରଳ, ଲଳିତ ଓ ହୃଦୟଗ୍ରାହୀ। ଆଦିବାସୀ ସଂସ୍କୃତି ତଥା ଲୋକ ସାହିତ୍ୟକୁ କବି ଜନସାଧାରଣଙ୍କ ଦରବାରରେ ଉପସ୍ଥାପିତ କରି ପାରିଛନ୍ତି। କୋରାପୁଟର ପ୍ରସିଦ୍ଧ ଦର୍ଶନୀୟ ଶିବପୀଠ ଗୁପ୍ତେଶ୍ୱରର ମହାତ୍ମ୍ୟକୁ ସାହିତ୍ୟରେ ସ୍ଥାନ ଦେଇଛନ୍ତି। ଲେଖକ, ଗବେଷକ, ପ୍ରକାଶକ ସମାଲୋଚକ, ପାଠକ ତଥା ଓଡ଼ିଆ ସାହିତ୍ୟ ଏକାଡ଼େମୀକୁ ପ୍ରାବନ୍ଧିକର ନମ୍ର ନିବେଦନ - କ୍ରମଶଃ ଦୁଷ୍ପ୍ରାପ୍ୟ ଓ ଆୟାସଲଭ୍ୟ ହୋଇ ଯାଉଥିବା କବିଙ୍କ ପ୍ରକାଶିତ କୃତି ଓ ପାଣ୍ଡୁଲିପିଗୁଡ଼ିକର ସଂଗ୍ରହ କରାଯାଇ ତାଙ୍କ ଗ୍ରନ୍ଥାବଳୀର ପ୍ରକାଶନ ପାଇଁ ଉଦ୍ୟମ ହେଉ। ତାହାହେଲେ ଯାଇ ଅମର ପ୍ରତିଭା ସମ୍ପନ୍ନ କବି ମଞ୍ଜୁଘୋଷ ତ୍ରିପାଠୀଙ୍କ ଉପଯୁକ୍ତ ପୂଜ୍ୟ ପୂଜ୍ୟ ହୋଇପାରିଥାନ୍ତା।

● *ନବରଙ୍ଗପୁର - ୭୬୪ ०୫୯*



"କେହି ରହିଁ ନାହିଁ ରହିବେ ନାହିଁଟି
ଭବରଙ୍ଗ ଭୂମି ତଳେ,
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳ ବଳେ।"
— ରାଧାନାଥ ରାୟ।

# ସାହିତ୍ୟ-ସଂସ୍କୃତି-ବାର୍ତ୍ତାବହ "ରାଜର୍ଷି ବିକ୍ରମଦେବ"

ଶରତ କୁମାର ମହାନ୍ତି

ରାଜର୍ଷି କବି ବିକ୍ରମଦେବ ବର୍ମା ନିରବଚ୍ଛିନ୍ନ ସାରସ୍ୱତ ସାଧନା ଏବଂ ସାଂସ୍କୃତିକ ବିକାଶରେ ବିଭୋର - ବିମଗ୍ନ, ସତେ ଯେପରି ତାଙ୍କର ବିଦଗ୍ଧ ରସଗ୍ରାହୀ ମନ ଭ୍ରମରଟି ସତତ ସାରସ୍ୱତ ଉପବନରେ କାବ୍ୟାମୃତ ପାନ ପାଇଁ ପ୍ରଲୁବ୍ଧ। ଗବେଷଣା ତଥା ସମାଲୋଚନାର ନିସ୍ପ୍ରୁପ ଅନ୍ଧକାର ଭିତରେ ସେ ଅବହେଳିତ ହୋଇଥିଲେ ମଧ୍ୟ ସାହିତ୍ୟ ଓ ସଂସ୍କୃତିର ବାର୍ତ୍ତାବହ ଭାବରେ ତାଙ୍କର ଅବଦାନ ଅତୁଳନୀୟ ତଥା ଉଲ୍ଲେଖନୀୟ। ସେଥିପାଇଁ ସେ ଶ୍ରଦ୍ଧା ଓ ସମ୍ମାନ ରଞ୍ଜିତ ବହୁ ଉପାଧି, ସାଂସ୍କୃତିକ ପଦବୀର ନାର୍ଯ୍ୟ ଅଧିକାରୀ। ସୂର୍ଯ୍ୟବଂଶୀ ଜୟପୁର ରାଜବଂଶର ସେ ଶେଷ ଅବତଂସ - ମହାରାଜା। ରଜା ହୋଇ ମଧ୍ୟ ଋଷିପ୍ରତିମ ଜୀବନ ଯାପନ କରିଥିବାରୁ ସେ ରାଜର୍ଷି। କବି ଶେଖର ଚିନ୍ତାମଣି ମହାନ୍ତିଙ୍କ ଭାଷାରେ "ବିଧାତା ତାଙ୍କୁ ରାଜର୍ଷି ବାଞ୍ଛିତ ସକଳ କଳାରେ ଅଳଙ୍କୃତ କରିଛନ୍ତି। ସାହିତ୍ୟ ସମ୍ରାଟ, ରାଜକବି, ବିକ୍ରମଦେବ ସର୍ବ ଗୁଣଧର ଆଦର୍ଶ ପୁରୁଷ, ମୂର୍ତ୍ତିମାନ ଚାରିତ୍ର୍ୟ ଦେବତା....। ସାହିତ୍ୟ ପ୍ରେମୀ କାବ୍ୟାମୋଦୀ, ବହୁ ମୂର୍ତ୍ତିଧାରୀ - ସଂସାରୀ ଯୋଗୀ ପଣ୍ଡିତ କବି ନାଟ୍ୟକାର, କଥାକାର, ସଂସ୍କାରକ, ବୟାକରଣ, ବୈଦାନ୍ତିକ, ଐତିହାସିକ, ଜ୍ୟୋତିର୍ବିଦ (ଦ୍ର-ରଚନାଳି ୨ୟ ଭାଗ - ପୃ ୪୬୨, ୫୨୪, ୫୨୬, ୫୨୯)। ଭାଷାକୋଷ ପ୍ରଣେତା ପ୍ରହରାଜ ତାଙ୍କୁ 'ଉତ୍କଳର ବିକ୍ରମାଦିତ୍ୟ' ଭାବରେ, ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ତାଙ୍କୁ 'ଉତ୍କଳ ଜାତୀୟ ଜୀବନର ସମ୍ରାଟ', କବିବର ଭାବେ ପ୍ରତିପାଦନ କରିଛନ୍ତି (ଦ୍ର - ରଚନାଳି ୨ୟ ଭାଗ ପୃ ୫୪୯)।

ଏତଦ୍‌ବ୍ୟତୀତ ବହୁ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ବିଦ୍ୱାନ ବିଦଗ୍ଧ ମଣ୍ଡଳୀ ଦ୍ୱାରା ସେ ପ୍ରଶଂସିତ। ଆନ୍ଧ୍ର ଭାରତୀ ତୀର୍ଥ ଗବେଷଣା ବି: ବି: ସହ ସଂପୃକ୍ତ ଇଂଲଣ୍ଡ, ଆମେରିକା, ଫ୍ରାନ୍ସ, ଓ କାଲିଫର୍ଣ୍ଣିଆର ବହୁ ବିଦେଶୀ ଗବେଷକ, ବିଶ୍ୱକବି ରବୀନ୍ଦ୍ରନାଥ, ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ଗୋପାଳ ପ୍ରହରାଜ, ଲକ୍ଷ୍ମୀନାରାୟଣ ସାହୁ, ଗୋପୀନାଥ ମହାନ୍ତି, ଚିନ୍ତାମଣି ମହାନ୍ତି, ମହା ମହୋପାଧ୍ୟାୟ ରାମନାଥ ନନ୍ଦ, ରାଧା ଚରଣ ପଣ୍ଡା ପ୍ରମୁଖ ତାଙ୍କର ସାରସ୍ୱତ ସାଧନା ଏବଂ କବି କର୍ମକୁ ଆକଳନ କରିଛନ୍ତି। ଆନ୍ଧ୍ର ବି.ବି. ତରଫରୁ ଡି.ଲିଟ ଏବଂ ଆନ୍ଧ୍ର ଭାରତୀତର୍ଥ ସମାଜରୁ ସେ 'ସାହିତ୍ୟ ସମ୍ରାଟ ଉପାଧି' ପ୍ରାପ୍ତ। ସେ କଳା ପ୍ରପୂର୍ଣ୍ଣ ଏବଂ ବିଦ୍ୟାସାଗର (ଦ୍ର: ରଚନାଳି ପ୍ରଥମ ଭାଗ = ଭୂମିକା)।

ଗବେଷକ ଡଃ A.V.D. ଶର୍ମା ତାଙ୍କର ଗବେଷଣା ନିବନ୍ଧ (ପି.ଏଚ୍.ଡି. ପ୍ରାପ୍ତ) "Intigration of Andhra and Orissa Cultures" ଗ୍ରନ୍ଥରେ ପ୍ରତିପାଦନ କରିଛନ୍ତି ଯେ, "ବିକ୍ରମଦେବ ବର୍ମା ଆନ୍ଧ୍ର ଓଡ଼ିଶାର ସାଂସ୍କୃତିକ ସମନ୍ୱୟର ସୂତ୍ରଧର ଏବଂ ବାର୍ତ୍ତାବହ। "He distinguished himself by virtue of his talents and his services to Andhra and Orissa in the literary, socio-cultural, and educational fields. He was a poet, scholar, and play in Sanskrit, Telugu, and Oriya. He had other obiding interests in the fields of dramaturgy; Public Service and popular movements. (ଦ୍ର: Preface - Integration of Andhra and Orissa Cultures)... . His devotional fervor as well as scholarship is evident by the fect of his composing "ASU" (extempore) poems on visiting the temples at Kanya Kumari and Villuputtar.

(ଦ୍ର: Thesis - P62)

ଶାସ୍ତ୍ରୀୟ ରୀତିରେ ସାହିତ୍ୟ ଓ ସଂସ୍କୃତିର ବାର୍ତ୍ତାବହ ନିରୂପଣ ତଥା ପ୍ରତିପାଦନ ପାଇଁ ନିମ୍ନଲିଖିତ ପ୍ରସଙ୍ଗ ବିଚାର୍ଯ୍ୟ। ଯଥା :–

(୧) ବିମଳ କବିକର୍ମ ଏବଂ ସାରସ୍ୱତ ସାଧନା।

(୨) ଗ୍ରାହକତା (ଚିହ୍ନୁରା ଗ୍ରାହକ କୋଟି କବି ଆୟୁଘେନି କରିଥିଲେ କବି କବିତ୍ୱ କି ହେବ ମ୍ଳାନି ?—ବି.ଚି.

ଏଇ ପର୍ଯ୍ୟାୟରେ ସଂପୃକ୍ତ ବ୍ୟକ୍ତିର ସାହିତ୍ୟ ସଂସ୍କୃତି ପ୍ରତି ଆଦର ଭାବ, ଆଗ୍ରହ ଏବଂ ପଠନ - ପର୍ଯ୍ୟାଲୋଚନା, ବିଚାର୍ଯ୍ୟ।

(୩) ପୃଷ୍ଠପୋଷକତା = (Patronage)
ସାହିତ୍ୟ ସଂସ୍କୃତିର ସୃଷ୍ଟି, ପ୍ରସାରଣ, ବିକାଶ ପାଇଁ ସଂପୃକ୍ତ ବ୍ୟକ୍ତିର ଅବଦାନ, ସକ୍ରିୟ ସହଯୋଗ, ସ୍ରଷ୍ଟାଙ୍କୁ ପ୍ରେରଣା ଉତ୍ସାହ ପ୍ରଦାନ, ଇତ୍ୟାଦି ଆକଳନ କରାଯିବ।

(୪) ସମାଲୋଚନା ଏବଂ ଗବେଷଣା - ଏ ପର୍ଯ୍ୟାୟରେ ସଂପୃକ୍ତ ବ୍ୟକ୍ତିର ସାରସ୍ୱତ ସାଧନା ତଥା ସାଂସ୍କୃତିକ କାର୍ଯ୍ୟକ୍ରମ ସଂପର୍କରେ ବିଦ୍ୱାନ ମଣ୍ଡଳୀ ତଥା ଗବେଷକ ଦ୍ୱାରା ଚର୍ଚ୍ଚା ହୋଇଥିବା ପ୍ରସଙ୍ଗ ବିଚାର୍ଯ୍ୟ।

(୫) ସମକାଳ ଓ ପରବର୍ତ୍ତୀ କାଳ ଉପରେ ପ୍ରଭାବ - ଏ କ୍ଷେତ୍ରରେ ସଂପୃକ୍ତ ବ୍ୟକ୍ତିର ସାହିତ୍ୟ ସଂସ୍କୃତି ଅବଦାନ ସମକାଳ ଓ ପରବର୍ତ୍ତୀ ସମୟରେ କିପରି ପ୍ରଭାବ ବିସ୍ତାର କରିଛି, ତାହାର ଆକଳନ ହେବ।

ଏଇ ପରିପ୍ରେକ୍ଷୀରେ ବିକ୍ରମଦେବଙ୍କୁ ସମାଲୋଚନାର କଠୋର ପରୀକ୍ଷା ନିରୀକ୍ଷା କରାଯାଇ ପାରେ :–

ବିକ୍ରମ ଦେବଙ୍କର ବିମଳ କବି କର୍ମ ଓ ସାରସ୍ୱତ ସାଧନା ନିରବଚ୍ଛିନ୍ନ ଭାବେ ପ୍ରାୟ ଅର୍ଦ୍ଧ ଶତାବ୍ଦୀ ବ୍ୟାପି ରାଜଗାଦି

ପ୍ରାପ୍ତିର (୧୯୩୧ ମସିହା ତା. ୫.୫.୧୯୩୧) ବହୁ ପୂର୍ବରୁ ସେ ସାରସ୍ୱତ ସାଧନାରେ ନିମଗ୍ନ। ତାଙ୍କର ଓଡ଼ିଆ, ସଂସ୍କୃତ, ହୀନ୍ଦି ଓ ତେଲୁଗୁ ଭାଷାରେ ଗଭୀର ପ୍ରବେଶ ଥିଲା ଏବଂ ଇଂରେଜୀ ଭାଷା ସେ ଜାଣିଥିଲେ। ତାଙ୍କର ସାଂସ୍କୃତିକ ଚାରଣଭୂମି ସେଥିପାଇଁ ଓଡ଼ିଆ ସଂସ୍କୃତ ହୀନ୍ଦି ତେଲୁଗୁ ସାହିତ୍ୟ ଯାଏଁ ପ୍ରଲମ୍ବିତ। ଓଡ଼ିଆ ଭାଷାରେ ତାଙ୍କର ସୃଷ୍ଟି ସଂପଦ "ରାଜର୍ଷି ବିକ୍ରମ ଦେବ ରଚନାଳି" (ପ୍ରଥମ ଭାଗ ୫୨୬ ପୃ. ଏବଂ ଦ୍ୱିତୀୟ ଭାଗ ୫୫୧) ନାମରେ ପ୍ରକାଶିତ ଏବଂ ସଙ୍କଳିତ। ଏହା ବିଭିନ୍ନ ସ୍ୱାଦ, ରୂପରସ ସମନ୍ୱିତ ଏକ ରସାଳ ମଧୁଚକ୍ର। ତାଙ୍କର ଅନ୍ୟ ୩ଟି ଅପ୍ରକାଶିତ ଗ୍ରନ୍ଥ ଯଥା - ପୁରନ୍ଦର ଦାସୀ ଚରିତ (ହରିକଥା ବର୍ଣ୍ଣିତ); କଳା ପୂର୍ଣ୍ଣୋଦୟ (ତେଲୁଗୁ ଭାଷାରେ ଲିଖିତ ଏବଂ କବିଙ୍କ ଦ୍ୱାରା ଓଡ଼ିଆରେ ଅନୁବାଦିତ); ତୁଳସୀ ଦାସଙ୍କ ବିରଚିତ "ବିନୟ ପତ୍ରିକାର" (ପଦ୍ୟାନୁବାଦ)। ଏତଦ୍ ବ୍ୟତୀତ ସେ ଧାରାବାହିକ ସମକାଳୀନ ପତ୍ର ପତ୍ରିକା (ଯଥା :- 'ଉତ୍କଳ ସାହିତ୍ୟ' 'ସହକାର', 'ରସଚକ୍ର', 'ପ୍ରଦୀପ', 'ମୁକୁର', 'ନବଭାରତ', 'ନବୀନ', 'ଶିଶିର', 'ଦୈନିକ ଆଶା', (New Orissa)ରେ ପ୍ରବନ୍ଧ, ଗଳ୍ପ, କବିତା, ବ୍ୟଙ୍ଗ ରଚନା ଇତ୍ୟାଦି ଲେଖୁଥିଲେ। ତାଙ୍କର ସୃଷ୍ଟି ସଂପଦ ବିବିଧ ଏବଂ ବିପୁଳ। ସାହିତ୍ୟର ସମସ୍ତ ବିଭାଗକୁ ସେ ପରିପୁଷ୍ଟ କରିଛନ୍ତି; ଯଥା :— କାବ୍ୟ, କବିତା, ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧ, ବ୍ୟଙ୍ଗ ରଚନା। ତାଙ୍କର କାବ୍ୟ କବିତା ବହୁ ରୂପ ରସ ବର୍ଣ୍ଣ ଶୈଳୀରେ ବର୍ଣ୍ଣାଢ୍ୟ। ସ୍ତବ, ସ୍ତୋତ୍ର, ଶ୍ଳୋକ, କବଚ, ନକ୍ଷତ୍ରମାଳା, ମାଳିକା, ଦଣ୍ଡକ, ଧନ୍ଦା, ପ୍ରହେଳିକା, ରହସ୍ୟ, ପଞ୍ଚକଠାରୁ ଆରମ୍ଭ କରି ଗୀତି କବିତା, ବନ୍ଦନା ଜଣାଣ ପ୍ରାର୍ଥନା, ବିବିଧ ପ୍ରକୃତି ବର୍ଣ୍ଣନା (କେତେକ କ୍ଷେତ୍ରରେ ସଜୀବ ଏବଂ ବ୍ୟକ୍ତିତ୍ୱ ଆରୋପିତ) ସରସ ଗୀତା ବଳୀ ଇତ୍ୟାଦି ରଚନା କରିଛନ୍ତି। କାବ୍ୟ କବିତାର ବହୁ ସ୍ଥଳରେ ବିମଳ କାବ୍ୟ ପ୍ରତିଭା, ଲଳିତ କୋମଳ ପଦ ମାଧୁରୀ, ଶୃଙ୍ଗାରୀ ରସ ଚେତନା; କାନ୍ତ କୋମଳ ସ୍ପଷ୍ଟ ବର୍ଣ୍ଣନା ଶୈଳୀ, ଭଞ୍ଜୀୟ ରୀତି ସୁଲଭ କବିତ୍ୱ ଓ ପାଣ୍ଡିତ୍ୟର କ୍ଷୀରନୀରବତ ସଂଯୋଗ; ପଦାବଳୀ ଯୁଗୀୟ ଭକ୍ତି ଭାବାପନ୍ନ ଗୀତର ଅପୂର୍ବ ବିନ୍ୟାସ ଲକ୍ଷ୍ୟଣୀୟ। ସେ ସଙ୍ଗୀତ ରାଧାମାଧବ ନାଟକ ବୃନ୍ଦ ଚରିତ ନାଟକ, ଉତ୍କଳ କୁଳମାଳା ନାଟକ ପ୍ରଣୟନ କରିଛନ୍ତି। ସଙ୍ଗୀତ ରାଧାମାଧବ ନାଟକଟି ଉଚ୍ଚାଙ୍ଗ ନାଟ୍ୟକଳା ସମନ୍ୱିତ ଏବଂ ବ୍ୟାସକବି ଫକୀର ମୋହନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ। ଯଥା :—

"ତୁମ୍ଭର କବିତ୍ୱ ରାଧାମାଧବ ନାଟକ - ପଢ଼ି ଜ୍ଞାନକରେ
ମୋର ଜୀବନ ସାର୍ଥକ।"

(ଉତ୍କଳ ଭ୍ରମଣ = ଦ୍ରଷ୍ଟବ୍ୟ)

ଏଠାରେ ସ୍ପଷ୍ଟ ଉଲ୍ଲେଖ କରେଁ କି - ବିକ୍ରମ ଦେବଙ୍କ ସାମଗ୍ରିକ ସାହିତ୍ୟ ସଂପଦର କଳାତ୍ମକ ମୂଲ୍ୟାୟନ ବା ସମ୍ୟକ ସମାଲୋଚନା ଦ୍ୱାରା ତାଙ୍କ ସୃଷ୍ଟି ପ୍ରତିଭାର ଆକଳନ ପାଇଁ ଆଲୋଚ୍ୟ ପ୍ରବନ୍ଧ ଉଦ୍ଦିଷ୍ଟ ନୁହେ। ତାଙ୍କୁ ସାହିତ୍ୟ ଓ ସଂସ୍କୃତିର ବାର୍ତ୍ତାବହ ଭାବରେ ପ୍ରତିପାଦିତ କରିବା ପାଇଁ ତାଙ୍କର ସୃଷ୍ଟି ସଂପଦ ଓ ସାଂସ୍କୃତିକ କାର୍ଯ୍ୟ କଳାପର ଆବଶ୍ୟକୀୟ ସୂଚନା ମାତ୍ର ଦିଆ ଯାଉଛି। ତେଣୁ, ତାଙ୍କ କବି କର୍ମର ଯତ୍ କିଞ୍ଚିତ ଆଲୋଚନା; ସୂଚନାତ୍ମକ - ସ୍ପର୍ଶଧର୍ମୀ ବିହଙ୍ଗାବଲୋକନ ସୁଲଭ। ତାଙ୍କ ଗଦ୍ୟ ସାହିତ୍ୟ ଶିଷ୍ଟ ଭାଷାଯୁକ୍ତ ଉଚ୍ଚାଙ୍ଗ କଳା ସମନ୍ୱିତ। ବିଶେଷତଃ ତାଙ୍କର ପ୍ରବନ୍ଧଗୁଡ଼ିକ ମଧୁସୂଦନୀୟ ସୂକ୍ଷ୍ମ ସଂସ୍କୃତ ଶୈଳୀରେ ଭାବୋଦ୍ଦୀପକ। ପ୍ରବନ୍ଧରେ ସେ ବହୁ ଗୂଢ଼ ତତ୍ତ୍ୱ ଦର୍ଶନ ଶାସ୍ତ୍ର ପ୍ରାଞ୍ଜଳ ଭାବରେ ପ୍ରକାଶ କରିଛନ୍ତି। ପ୍ରବନ୍ଧରେ ଶବ୍ଦ ପ୍ରୟୋଗ, ଭାଷା ଭାବ ବ୍ୟକ୍ତ କ୍ଷେତ୍ରରେ ସେ କଠୋର ପନ୍ଥୀ। ଅସମୀଚୀନ ଶବ୍ଦ ସୃଷ୍ଟି ଦ୍ୱାରା ସରସ୍ୱତୀଙ୍କର ଶରୀର ବୃଦ୍ଧି କରଣରେ ସରସ୍ୱତୀଙ୍କି ଗୋଦରୀ କରିବ ଅସାମଞ୍ଜସ୍ୟ।.... ସମ୍ମିଳନୀ ଅପଶବ୍ଦ ସମ୍ମେଳନୀ ବୋଲିବା ସମୁଚିତ।..... ଧର୍ମଘଟ ସମାସ ଅସମୀଚୀନ - ଧର୍ମ ହଠ ହେବା ଉଚିତ।... ନିର୍ମାଲ୍ୟ ପଦ କଦାପି ଅନ୍ନାଦିରେ ବ୍ୟବହୃତ ହୋଇ ନ ପାରେ। ନିର୍ମାଲ୍ୟ ଶବ୍ଦର ଅର୍ଥ (=ନିର୍ଗତ ମାଲ୍ୟ) - ପୂଜିତ ହେବା ପରେ ବିସର୍ଜିତ ହେବା ପୁଷ୍ପାଦି। ଅତଏବ ପୁରୁଷୋତ୍ତମ କ୍ଷେତ୍ରରେ ବିକା ହେଉଥିବା ଭୋଗ ପଦାର୍ଥକୁ 'ମହାପ୍ରସାଦ' ବୋଲିବା ସମୁଚିତ।.... ଶ୍ମଶ୍ରୁ ବୋଲନ୍ତେ ନିଶ ଏବଂ ଦାଢ଼ି। ଦାଢ଼ି କାଟି ନିଶ ରଖିବା ପ୍ରଥା ଅର୍ବାଚୀନ। ପୂର୍ବକାଳରେ ଭାରତରେ ନଥିଲା ବଳୀ କ୍ରୂରାଚାର ପ୍ରଥା, କନ୍ଧମାନଙ୍କର ମେରିଆ ପ୍ରଥା ଘୋର ନିଷ୍ଠୁରତା ଏବଂ କୁ-ସଂସ୍କାରାଚ୍ଛନ୍ନ, କ୍ରୂରହିଂସନ, ଦୁରାଚାର ଏ ଦେଶରେ କେବେ ଜାତ ହେଲା ? ଏହା ଅଚିରେ ଦୂର ହେବା ସମୁଚିତ। (ଦ୍ର: ରଚନାଳି ୨ୟ ଭାଗ - ପୃ ୧୧୫, ୧୧୬, ୭୫, ୭୯, ୮୦)। ଏତଦ୍‌ବ୍ୟତୀତ ନାଟ୍ୟକଳା ଧର୍ମଦର୍ଶନ ତତ୍ତ୍ୱ, ଚାର୍ବାକ ଦର୍ଶନ, ଉପନ୍ୟାସ କାହାଣୀ ରଚନାର ଧାରା, ଅନୁବାଦ ରୀତି, ସମାଲୋଚନା ପଦ୍ଧତି ତଥା ଆଦର୍ଶ ଇତ୍ୟାଦି ବହୁ ସାହିତ୍ୟିକ ସମସ୍ୟା ଓ ପ୍ରସଙ୍ଗରେ ବିକ୍ରମଦେବ ସ୍ପଷ୍ଟ, ସୂକ୍ଷ୍ମ, ଉଚିତ ଦିଗ୍‌ଦର୍ଶନ ଦେଇଛନ୍ତି। ସେ ଜଣେ ସଫଳ ଶିଷ୍ଟ ପ୍ରବନ୍ଧ ସ୍ରଷ୍ଟା।

ଲେଖକଙ୍କର ଅନୁବାଦ କଳା ଏବଂ ସଫଳ ଉପସ୍ଥାପନା ଶୈଳୀ ଅଭିନବ। ଓଡ଼ିଆ ସାହିତ୍ୟର ଆଦ୍ୟ ଅନୁବାଦକଙ୍କ ମଧରୁ ସେ ଅନ୍ୟତମ ଏବଂ ସଫଳ ସ୍ରଷ୍ଟା।

**ଅନୁବାଦ ସୃଷ୍ଟି କର୍ମ**

୧। ଭଗବଦ୍ ଗୀତା ମହାତ୍ମ୍ୟ (ଗୀତାନୁବାଦ)

୨। ଶ୍ରୀ ଗୋବିନ୍ଦ ମଞ୍ଜରୀକାବଳୀ (ଶଙ୍କରାଚାର୍ଯ୍ୟଙ୍କର ମୋହମୁଦ୍‌ଗର ଅନୁବାଦ)

୩। କାଦମ୍ବରୀ କଥାସାର (ବାଣ ଭଟ୍ଟଙ୍କର କାଦମ୍ବରୀ ଅନୁବାଦ)

୪। ଉତ୍କଳ କୁନ୍ଦମାଳା ନାଟକ (ସଂସ୍କୃତ ଭାଷାରେ ରଚିତ ଦିଙ୍‌ନାଗ କବିଙ୍କର "କୁନ୍ଦମାଳା"ର ଅନୁବାଦ (ସାରସ୍ୱତ ପ୍ରେସ୍‌ରୁ ୧୯୩୮ରେ ପ୍ରକାଶିତ) ବିକ୍ରମ ରଚନାଳି ପ୍ରଥମ ଭାଗରେ ସ୍ଥାନିତ ପୃ ୪୩୯-୫୨୬।

୫। ଶ୍ରୀ ତୁଳସୀ ବିକ୍ରମ ରାମାୟଣ (ହିନ୍ଦୀ ତୁଳସୀ ରାମାୟଣ "ରାମଚରିତ ମାନସ"ର ଆଦ୍ୟକାଣ୍ଡର ଅନୁବାଦ) ବିକ୍ରମ ରଚନାଳି ପ୍ରଥମ ଭାଗରେ ସ୍ଥାନିତ।

୬। କତିପୟ ସ୍ତବ, ଶ୍ଳୋକ, ସ୍ତୋତ୍ର, କବଚ ଇତ୍ୟାଦିର ଅନୁବାଦ।

କବିଙ୍କର ଅନୁବାଦ ସ୍ଥାନେ ସ୍ଥାନେ ମୂଳ ରଚନାର ମାଧୁର୍ଯ୍ୟକୁ ଅତିକ୍ରମ କରି କଳାତ୍ମକ ସୌନ୍ଦର୍ଯ୍ୟରେ ମଣ୍ଡିତ। ମନେ ହୁଏ ସତେ ଯେପରି ମୌଳିକ ସୃଷ୍ଟି ସଂପଦରେ ଏକ ସ୍ୱତଃ ସ୍ଫୂର୍ତ୍ତ ଉତ୍ସରଣ।

କଥା ସାହିତ୍ୟର ଶିଳ୍ପୀ ଭାବରେ ବିକ୍ରମ ଦେବ ପ୍ରାଚୀନ ପନ୍ଥୀ। ତାଙ୍କର କାଦମ୍ବରୀ କଥାସାର (ଅନୁବାଦ), ଗ୍ରୀକ୍ ପୁରାଣ କଥା, ସୁଲକ୍ଷଣା, ଗୁଣବତୀ ପତ୍ନୀ ପ୍ରଭୃତି କତିପୟ ସୃଷ୍ଟି ଉଲ୍ଲେଖ ଯୋଗ୍ୟ।

କବିକର୍ମ ତଥା ସାରସ୍ୱତ ପ୍ରତିଭାର ସଂକ୍ଷିପ୍ତ ଆକଳନ କ୍ଷେତ୍ରରେ କବିଙ୍କର ସ୍ୱ-ରଚିତ ପ୍ରବନ୍ଧ "ମୋ କବିତା" (ରଚନାଳି ୨ୟ ଭାଗ ପୃ ୧୭୬-୧୭୮ ଦ୍ରଷ୍ଟବ୍ୟ)ର ଉକ୍ତି ଉଦ୍ଧରଣ ଯୋଗ୍ୟ - "ମୁଁ ମୋ ବଂଶ ଗୁରୁତ୍ୱରୁ, ପାଣ୍ଡିତ୍ୟ ଗୁରୁତ୍ୱରୁ କିମ୍ବା ଧନ ଗୁରୁତ୍ୱରୁ କବି ଭାବରେ ଲୋକ ବିଦିତ ହୋଇ ପାରିଛି ନାହିଁ। ଯେପରି ହେଉ ନାମ କମାଇବା ତ ଆବଶ୍ୟକ। ଯେନତେନ ପ୍ରକାରେଣ ପ୍ରସିଦ୍ଧଃ ପୁରୁଷୋଭବେତ୍। ସେ ହେତୁରୁ ପ୍ରସିଦ୍ଧି ଲଭିବା ପାଇଁ କବି ହେଲି। ବିନୟ ଭାବରେ କବି ନିଜକୁ ଉପସ୍ଥାପନା କରି ଶ୍ଳେଷ ତାର୍ଯ୍ୟକ ଶୈଳୀରେ କବି ହେବାର ଆସ୍ପର୍ଦ୍ଧାକୁ କଟାକ୍ଷ କରିଛନ୍ତି।

କବି ନିଜକୁ ନ୍ୟୂନ କରି ଉତ୍ତମ କବିଙ୍କୁ ଶ୍ରଦ୍ଧା, ସମ୍ମାନ ସହକାରେ ପ୍ରଶଂସା କରିଛନ୍ତି - "ଜଗଦୀଶ ଜଗତରେ ସୃଷ୍ଟିସ୍ଥିତି ଲୟ କାରକ ହେବାପରି କବି ଶବ୍ଦ ସୃଷ୍ଟିସ୍ଥିତି ଲୟକାରକ ବୋଲି ମଦୁଦ୍ଦେଶ। କବିର ଶକ୍ତିମାତ୍ର ନୁହେ ଦୃଷ୍ଟି ମଧ ଲୋକାତୀତ।" (ରଚନାଳି ୨ୟ ଭାଗ = ପୃ ୧୭୮ ଦ୍ର)

ଯଶଖ୍ୟାତି ଅର୍ଜନ ବା ଜୀବିକା ପାଇଁ ସେ ସାହିତ୍ୟ ସାଧନା କରି ନଥିଲେ। ସାହିତ୍ୟ ତାଙ୍କର ବ୍ୟସନ ନୁହେ - ଜୀବନ। ତାଙ୍କର ସାରସ୍ୱତ ସମ୍ଭାର ମୂଲ୍ୟାୟନ ପ୍ରସଙ୍ଗରେ ବିଶିଷ୍ଟ ସାହିତ୍ୟିକ ଶ୍ରୀ ଗୋପୀନାଥ ମହାନ୍ତିଙ୍କ ମନ୍ତବ୍ୟ ଉଦ୍ଧାର କରୁଛି - "ବିକ୍ରମଦେବଙ୍କ ରଚନାଳି ପାଠକମାନଙ୍କ ଦ୍ୱାରା ଆଦୃତ ହେବ - ଗବେଷଣା ଓ ଆନନ୍ଦର ବିଷୟ ହେବ। ତାହା ଷାଠିଏ ବର୍ଷର କଠୋର ସାଧନାର ଫଳ। ଜାତୀୟ ସାହିତ୍ୟର ଇତିହାସରେ ଗୋଟିଏ ଯୁଗ।.... ସାହିତ୍ୟଚର୍ଚ୍ଚା ଓ ସାଧନାରେ ସେ ନିମଗ୍ନ। କାହାରି ମତକୁ ଅପେକ୍ଷା କରି ନାହାନ୍ତି - ନିନ୍ଦା ପ୍ରଶଂସାକୁ ଅନେଇ ବସି ନାହାନ୍ତି। ଆପଣାର ରୁଚି ଅନୁଯାୟୀ ରଚନା ଚାଲିଛି - କେବେହେଲେ ଅଟକି ନାହିଁ। ଏ ଆଦର୍ଶ ନମସ୍ୟ।" (ରଚନାଳି/ପ୍ରଥମ ଭାଗ ଭୂମିକା ଦ୍ରଷ୍ଟବ୍ୟ)। ଗବେଷକ ଡଃ A.V.D ଶର୍ମା ତାଙ୍କର ଗବେଷଣା ନିବନ୍ଧରେ ମନ୍ତବ୍ୟ ଦିଅନ୍ତି ଯେ, Vikram Deo Varma was a scholar, Poet, Story writer, Play writer and an Essayist ....he could not make a loading contribution in my branch of literature. None of his work are hailed as master pieces in his days or remembered as the furning points in the animals of literary history today. He is remembered more as a patron and philonthropist then a writer (Ref. Int. Of Andhra and Orissa Cultures)

ବିକ୍ରମ ଦେବ ଓଡ଼ିଆ ସାହିତ୍ୟରେ ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ନୁହନ୍ତି। ସାହିତ୍ୟ କ୍ଷେତ୍ରରେ ନୂତନ ଦିଗଦର୍ଶନ ଦେଇ ନାହାନ୍ତି ବା ନୂତନ ଶୈଳୀ ପ୍ରବର୍ତ୍ତନ କରି ନାହାନ୍ତି। କିନ୍ତୁ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ସଙ୍କଟ କାଳରେ ଏକ ଗିରିଗୁମ୍ଫା ପରିବେଷ୍ଟିତ ଝାଡ଼ଖଣ୍ଡ ଭୂଖଣ୍ଡର ପ୍ରାନ୍ତ ଅଞ୍ଚଳରେ ନିରବଚ୍ଛିନ୍ନ ଭାବରେ ଦୀର୍ଘ ୬୦ ବର୍ଷ ଧରି ସାରସ୍ୱତ ସାଧନା ଅବ୍ୟାହତ ରଖିବା ଏକ ବିଶେଷ ସୃଜନୀ ଶକ୍ତିର ପରିଚାଳକ। ତାଙ୍କର ସାହିତ୍ୟାନୁରକ୍ତି, କଳାପ୍ରେମ, ସଙ୍ଗୀତ ନାଟକ କଳାପ୍ରତି ଆସକ୍ତି, ଏକ ଚୀର ଚଞ୍ଚଳ ସ୍ୱର୍ଣ୍ଣକାତର ଆବେଗବିଧୁର କାବ୍ୟ ପୁରୁଷର ଇଙ୍ଗିତରୁ ସୃଷ୍ଟି। ତାଙ୍କର ରସିକ ମନ, କାବ୍ୟାନନ୍ଦ ପାୟୀଦିଗସ୍ପୃ ହୃଦୟଟିକୁ ସେ ଛଇଳା ପୁଣ୍ୟବତୀର ରସିକିନୀ କାବ୍ୟ ନାୟିକା ପାଖରେ ବନ୍ଧା ଦେଇଥିଲେ - ମୁକୁଳେଇ ପାରି ନାହାନ୍ତି। ସେ ମହାରାଜା ଥିଲେ ମାତ୍ର ୨୦ ବର୍ଷ ପାଇଁ (୧୯୩୧-୧୯୫୧)। କିନ୍ତୁ ରାଜା ହୋଇ ରହିଗଲେ ଚୀରଦିନ ପାଇଁ ଚିହ୍ନରା ଗ୍ରାହକ ପାଠକମାନଙ୍କ ହୃଦ-ସିଂହାସନରେ।

"ଓଡ଼ିଆ ଭାଷା ବ୍ୟତୀତ ସଂସ୍କୃତରେ ତାଙ୍କର ରଚନା ଅର୍ଥ ଗୌରବ ମଣ୍ଡିତ, ସୁଲଳିତ ଏବଂ ନିର୍ଦ୍ଦୋଷ। ତେଲୁଗୁ ପତ୍ର ପତ୍ରିକାମାନଙ୍କରେ ତାଙ୍କ ଅସଂଖ୍ୟ ରଚନା ଛଡ଼ା ଆନ୍ଧ୍ର ଭାଷାକୁ ତାଙ୍କର ଅମୂଲ୍ୟ ଦାନ 'କୃଷ୍ଣାର୍ଜୁନ ଚରିତମ୍' କାବ୍ୟ ଏବଂ ମାନବତୀ ଚରିତ 'ନାଟକ ଯାହା ଆନ୍ଧ୍ର ବିଶ୍ୱବିଦ୍ୟାଳୟର କଲେଜ ପାଠ୍ୟ। (ରଚନାଳି - ପ୍ରଥମ ଭାଗ - ଭୂମିକା ଦ୍ରଷ୍ଟବ୍ୟ)

ତେଲୁଗୁ ଭାଷାରେ ତାଙ୍କର ରଚନା ସଂଗୃହୀତ ହୋଇ "ରଚନାଲୁ" ଶୀରୋନାମରେ ସଂକଳିତ। ବିସ୍ତୃତଃ ଓଡ଼ିଆ ଭାଷାର ସୃଷ୍ଟି ସଂପଦ ଅପେକ୍ଷା ତେଲୁଗୁରେ ଅଧିକ ରଚିତ। ଏଠାରେ କେବଳ ତାର ସୂଚନା ମାତ୍ର ପ୍ରଦତ୍ତ।

ସାହିତ୍ୟ ଓ ସଂସ୍କୃତିର ଗ୍ରାହକତା, ପୃଷ୍ଠପୋଷକତା ପର୍ଯ୍ୟାୟରେ ବିକ୍ରମ ଦେବଙ୍କ ଅବଦାନ ଅତୁଳନୀୟ। ସେ ବିଦଗ୍ଧ ଚିହ୍ନରା ଗ୍ରାହକ। ସ୍ରଷ୍ଟାମାନଙ୍କ ପ୍ରତି ତାଙ୍କର ଶ୍ରଦ୍ଧା, ସମ୍ମାନ ଅମାପ। ଲେଖା ଓ ଲେଖକଟିଏ ପାଇଲେ, ସେ କୋଟିନିଧି ଭାବରେ ଗ୍ରହଣ କରନ୍ତି। ସେ ବହୁପାଠୀ। ତାଙ୍କର ରାଜଦରବାରରେ ବହୁ କବି, ପଣ୍ଡିତ, ଲେଖକ, ବିଦଗ୍ଧଗ୍ରାହକ,

କଳାକାର, ଶିଳ୍ପୀ, ସଙ୍ଗୀତଜ୍ଞ ଥିଲେ। ମହାମହୋପାଧ୍ୟାୟ ପଣ୍ଡିତ ବିଦ୍ୟାଭୂଷଣ ରାମନାଥ ନନ୍ଦ ଯେ କି 'ଜୟପୁର ରାଜ ବଂଶାବଳୀ' (ଅପୂର୍ବ ସଂସ୍କୃତ ଗ୍ରନ୍ଥର ପ୍ରଣେତା) ସେମାନଙ୍କ ମଧ୍ୟରୁ ଅନ୍ୟତମ। ଆନ୍ଧ୍ର ଏବଂ ଓଡ଼ିଶାର ସାଂସ୍କୃତିକ ବିକାଶ ତଥା ସାହିତ୍ୟ ସୃଷ୍ଟି ପାଇଁ ସେ ସର୍ବଦା ଯତ୍ନଶୀଳ। ବିଭିନ୍ନ ଶିକ୍ଷାନୁଷ୍ଠାନ, ସାଂସ୍କୃତିକ ଅନୁଷ୍ଠାନକୁ ତାଙ୍କର ବିପୁଳ ପରିମାଣରେ ଅର୍ଥ ଦାନ ଉଲ୍ଲେଖ ଯୋଗ୍ୟ। ଜୟପୁରସ୍ଥ ବିକ୍ରମ ଦେବ ମହାବିଦ୍ୟାଳୟର ଅଟ୍ଟାଳିକା, ଏବଂ ବିପୁଳାୟତନ ପ୍ରାଙ୍ଗଣ ବିକ୍ରମଦେବ ଛାତ୍ରାବାସର ଘରବାଡ଼ି ତାଙ୍କର ଦାନ। ପୂର୍ଣ୍ଣଚନ୍ଦ୍ର ଭାଷା କୋଷର ପ୍ରକାଶନ ପାଇଁ ସେ ବିଶିଷ୍ଟ ପୃଷ୍ଠପୋଷକ। କଟକ ମେଡ଼ିକାଲ କଲେଜକୁ ସେ ୧ ଲକ୍ଷ ୩୦ ହଜାର; ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ପୁରସ୍କାର (Scholarship) ପାଇଁ ୧୦ ହଜାର, ଦାନ କରିଥିଲେ। ଚିନ୍ତାମଣି ମହାନ୍ତିଙ୍କ ଗ୍ରନ୍ଥାବଳୀ ପ୍ରକାଶନ ପାଇଁ; ନୀଳକଣ୍ଠଙ୍କର ''ନବଭାରତ'', ବୈକୁଣ୍ଠନାଥ ପଟ୍ଟନାୟକଙ୍କର କାବ୍ୟ ପ୍ରକାଶନ ପାଇଁ ଲକ୍ଷ୍ମୀ ନାରାୟଣ ସାହୁଙ୍କର 'The hill tribes of Jeypore' ପ୍ରକାଶନ ପାଇଁ ସେ ଆବଶ୍ୟକ ଅର୍ଥଦାନ କରିଛନ୍ତି। ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ, ବିଚ୍ଛିନ୍ନାଞ୍ଚଳ ଏକତ୍ରୀକରଣ। ଜୟପୁରକୁ ଓଡ଼ିଶା ସହ ମିଶ୍ରଣ ପ୍ରକ୍ରିୟାରେ ସେ ସକ୍ରିୟ ସହଯୋଗ କରିଥିଲେ। ଉତ୍କଳ ସମ୍ମିଳନୀର ପ୍ରତିଷ୍ଠା ସମୟରୁ ଶେଷଯାଏଁ ପ୍ରତ୍ୟେକ ଅଧିବେଶନରେ ଯୋଗ ନେଉଥିଲେ ଏବଂ ୧୯୧୪ରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ୧୦ମ ଅଧିବେଶନ (ପାରଳାଖେମୁଣ୍ଡିଠାରେ)ର ସଭାପତି ଭାବରେ ତାଙ୍କର ଓଜସ୍ୱିନୀ ଅଭିଭାଷଣ ଏକ ଇତିହାସ। ସ୍ୱତନ୍ତ୍ର ଉତ୍କଳ ଗଠନ ଏବଂ ଜୟପୁର ମିଶ୍ରଣ ପର୍ଯ୍ୟାୟରେ ବିକ୍ରମ ଦେବଙ୍କ ଭୂମିକାକୁ ଶତମୁଖରେ ପ୍ରଶଂସା କରି ଉତ୍କଳର ତତ୍କାଳୀନ ଜାତୀୟ ନେତୃବୃନ୍ଦ କୃତଜ୍ଞତା ପତ୍ରମାନ ପଠାଇଛନ୍ତି :— ଯାହାକି ରଚନାଳି ଦ୍ୱିତୀୟ ଭାଗରେ ସ୍ଥାନିତ (ଦ୍ର-ପୃ ୫୪୪-୫୫୧ ରଚନାଳି ୨ ୟ ଭାଗ)।

ଏଠାରେ ଉଲ୍ଲେଖ ଯୋଗ୍ୟ ଯେ, ବିକ୍ରମଦେବ ଦୀର୍ଘ ୬୦ ବର୍ଷବ୍ୟାପି ତାଙ୍କର ମହାନ କବିକର୍ମ, ସାଂସ୍କୃତିକ କ୍ରିୟାକଳାପ, ଜନସେବା, ପାଇଁ ବହୁ ଭାବରେ ପ୍ରଶଂସିତ ହୋଇ ଥିଲେ ମଧ୍ୟ, ସେଥିପାଇଁ ସେ କସ୍ମିନ ସ୍ୱର୍ଣ୍ଣକାତର, ଉଲ୍ଲସିତ ବା ସ୍ଫୀତ ହୋଇ ନାହାନ୍ତି। ଅନିସନ୍ଧିତ୍ସୁ ଗବେଷକ ଏବଂ ବିଦ୍ୱାନ ମଣ୍ଡଳୀ ସାହିତ୍ୟ-ସଂସ୍କୃତିର ବାର୍ତ୍ତାବହ ଭାବରେ ତାଙ୍କର ଭୂମିକା ଏବଂ ଅବଦାନକୁ ନିରପେକ୍ଷ ଭାବରେ ଆକଳନ କରିବା ପାଇଁ ସମୟ ଆସିଛି। କାରଣ ବିକ୍ରମ ଦେବ ବ୍ୟକ୍ତି, ବ୍ୟକ୍ତିତ୍ୱର ଦେହଳୀ ଅତିକ୍ରମ କରି ମହାନ ସାଂସ୍କୃତିକ ଅନୁଷ୍ଠାନରେ ପରିଣତ ହୋଇଛନ୍ତି।



# "ଆଦିବାସୀ ଲୋକଗଳ୍ପ - ଏକ ଅଧ୍ୟୟନ"

ଡକ୍ଟର କିଶୋର ଚନ୍ଦ୍ର ଦାସ

"ଆଦିବାସୀ ଶବ୍ଦଟିର ଅର୍ଥ ଆଦି ବା ପ୍ରଥମରୁ ବସବାସ କରି ଆସୁଥିବା ଅଧିବାସୀ। ଏମାନେ ଆଦିମ ଅର୍ଥାତ୍ ସର୍ବ ପ୍ରଥମ ଅଧିବାସୀ। ନୃତତ୍ତ୍ୱବିତ୍ ଭାଷାକୋଷ (ଡ଼୍ଯତ୍ଥ୍ୟ୍ପ୍-କ୍ରଡ଼୍ଜ୍ ପୃତ୍ତ ଖକ୍ରନ୍ନକ୍ପ୍ରଙ୍କ୍ପ୍ନପୃଦ୍ଧ୍) ଅନୁସାରେ ଏହି ଶବ୍ଦର ଅର୍ଥ "ଏକାଦିକ୍ରମେ ଏକ ଭାଷା, ଏକ ସଂସ୍କୃତି ଓ ଏକ ସାମାଜିକ ଜୀବନର ମୂଳଦୁଆ ଉପରେ ପ୍ରତିଷ୍ଠିତ ସାମାଜିକ ଗୋଷ୍ଠୀ।" ସେଇ ଆଦିମ ଅଧିବାସୀମାନେ ହିଁ ଆମ ଦେଶର ଅତୀତର ଭୌଗୋଳିକ ବିବର୍ତ୍ତନର ସ୍ୱାକ୍ଷର ବହନ କରିଅଛନ୍ତି। ଭାରତ ବର୍ଷର ଆଦିବାସୀ ବହୁଳ ପ୍ରଦେଶମାନଙ୍କ ମଧ୍ୟରୁ ଓଡ଼ିଶାର ସ୍ଥାନ ଶୀର୍ଷରେ। ଆମ ପ୍ରଦେଶର ମୋଟ ଜନ ସଂଖ୍ୟାର ପ୍ରାୟ ଏକ ଚତୁର୍ଥାଂଶ ଆଦିବାସୀ। ବିଶେଷ କରି ଡେଉ ଡେଉକା ପର୍ବତମାଳ ଘଞ୍ଚ ଅରଣ୍ୟ ପରିବେଷ୍ଟିତ ନଦୀ ନାଳ ଝୋଲା ପରିପୂର୍ଣ୍ଣ ଅବିଭକ୍ତ କୋରାପୁଟ ଜିଲ୍ଲାରେ ହିଁ ସର୍ବାଧିକ ସଂଖ୍ୟକ ଆଦିବାସୀ ବସବାସ କରନ୍ତି। ଏହି ଜିଲ୍ଲାରେ ପ୍ରାୟ ଶତକଡ଼ା ୬୧ ଜଣ ହେଉଛନ୍ତି ଆଦିବାସୀ। ଓଡ଼ିଶାରେ ଯେଉଁ ୬୨ ପ୍ରକାର ଆଦିବାସୀ ଗୋଷ୍ଠୀ ପରିଲକ୍ଷିତ ହୁଅନ୍ତି, ତନ୍ମଧ୍ୟରୁ ପ୍ରାୟ ୨୦ରୁ ଅଧିକ ସଂପ୍ରଦାୟ କେବଳ କୋରାପୁଟ ଜିଲ୍ଲାରେ ହିଁ ଦେଖାଯାନ୍ତି। ସେମାନେ ହେଲେ - ବଂଜାରା, ଭତ୍ରା, ଭୂମିଆ, ଭୁଂଜିଆ, ବଣ୍ଡା ପରଜା, ଧାରୁଆ, ଡ଼ିଡ଼ାୟୀ, ଗଣ୍ଡିଆ, ହଲବା, ଜଟାପୁ, ନଂଗୁଳି କନ୍ଧ, ସୀତାକନ୍ଧ, କନ୍ଧ ଡ଼ୋର, କୋରୁଆ କୁଟିଆ, କୋୟା, ମାଡ଼ିଆ, ମାଟିଆ, ଅନାଟ୍ୟ, ପାରେଂଗା, ପରଜା, ସଉରା ଇତ୍ୟାଦି।[୧] ସେମାନେ ପ୍ରକୃତିର ମୁକ୍ତ କୋଳରେ ହସି ଖେଳି ସରଳ ନିଷ୍କପଟ ଜୀବନ ଯାପନ କରନ୍ତି। ବରଳୁ ଛକଡ଼ି ପରି ଏଇମାନେ ମାଟିର ମଣିଷ ନୁହନ୍ତି ବରଂ ପଥରର ମଣିଷ, ପ୍ରକୃତିର ମଣିଷ। ସଭ୍ୟ ସମାଜଠାରୁ ଦୂରରେ ତାଙ୍କର ବସତି, ସଭ୍ୟତା ଆଲୋକରୁ ବଞ୍ଚିତ ଏମାନେ। ତଥାପି ସେଇମାନଙ୍କର ଏକ ନିଜସ୍ୱ ସଂସ୍କୃତି, ଐତିହ୍ୟ ତଥା ପରମ୍ପରା ବିଦ୍ୟମାନ। ସେଇମାନଙ୍କର ରୀତି, ନୀତି, ଚାଲିଚଳଣୀ, ସଂସ୍କାର ଜୀବନ ଯାପନ ପ୍ରଣାଳୀ ସ୍ୱତନ୍ତ୍ର ଧରଣର। ଆଜି ହୁଏ ତ ସେଇମାନଙ୍କର ସଂସ୍କୃତିକୁ ବାଦ ଦେଲେ ଆର୍ଯ୍ୟ ବା ଭାରତୀୟ ସଂସ୍କୃତିକୁ ବୁଝିବା ସମ୍ଭବପର ହେବ ନାହିଁ। ଦୁର୍ଗମ ପାହାଡ଼ିଆ ବନାନୀ, ଗମନା ଗମନର ଅସୁବିଧା ଏବଂ ଅସ୍ୱାସ୍ଥ୍ୟକର ଜଳବାୟୁ ଇତ୍ୟାଦି ହିଁ ସେମାନଙ୍କର ପ୍ରଗତି ପଥରେ ପ୍ରତିବନ୍ଧକ ସାଜିଛି। ସେଇମାନଙ୍କୁ ଆମେ ପାସୋରି ଦେଲେ ଚଳିବନି। ସେଇମାନଙ୍କ ପ୍ରତି ପ୍ରୀତିପୂର୍ଣ୍ଣ ଦୃଷ୍ଟି ଦେଇ, ସେଇମାନଙ୍କ ଜୀବନଚର୍ଯ୍ୟା ଉପରେ ଆମ୍ଭମାନଙ୍କୁ ଅଧିକ ଆଲୋକପାତ କରିବାକୁ ପଡ଼ିବ।

ଆଦିବାସୀମାନେ ବିଭିନ୍ନ ପ୍ରକାର ଭାଷାରେ ସେମାନଙ୍କର ମନର ଭାବକୁ ପ୍ରକାଶ କରିଥାନ୍ତି। ସେ ସବୁ ଭାଷାର ଲିପି ଅତୀତରେ ନ ଥିଲା। କିନ୍ତୁ ପରବର୍ତ୍ତୀ ସମୟରେ କେତେକ ଗୋଷ୍ଠୀର ଲିପି ଆବିଷ୍କୃତ ହୋଇଛି। ଓଡ଼ିଶା ସରକାରଙ୍କ ଆନୁକୂଲ୍ୟରେ କିଛି ବର୍ଷ ତଳୁ 'ଆଦିବାସୀ ଭାଷା ଓ ସଂସ୍କୃତି ଏକାଡ଼େମୀ' ପ୍ରତିଷ୍ଠିତ ହୋଇ କିସାନ, ଓରାଓଁ, ଡିଡାୟୀ, କୁଇ, ସାନ୍ତାଳୀ, ଗଦବା, ଜୁଆଙ୍ଗ, ଖଡ଼ିଆ, କୋୟା, ଲାଞ୍ଜିଆ ସଉରା ଇତ୍ୟାଦି ଭାଷା ସଂପର୍କୀୟ ପୁସ୍ତକ ପ୍ରକାଶିତ ହେଲାଣି। କିନ୍ତୁ ପ୍ରାଚୀନ କାଳରେ ସେମାନଙ୍କର ଲିପି ଓ ସାହିତ୍ୟ ନ ଥିବାରୁ ମୁଖରୁ ମୁଖ ଦେଇ ସେମାନଙ୍କର କେତେକ ଲୋକଗୀତ ଓ ଲୋକ କାହାଣୀ ଗଡ଼ି ଆସୁଥିଲା। ଲିଖିତ ଭାଷା ଅପେକ୍ଷା କଥିତ ଭାଷାରେ ସମନ୍ୱୟର ଧାରା କ୍ଷିପ୍ର ହୁଏ। ତେଣୁ ଆଦିବାସୀ ଭାଷାରେ ବହୁ ପ୍ରକ୍ଷେପ ଓ ସମନ୍ୱୟର ନିଦର୍ଶନ ରହିଛି। ଓଡ଼ିଆ ସାହିତ୍ୟର ଲୋକଗୀତ ଓ କାହାଣୀ ପରି ଏଗୁଡ଼ିକ ମଧ୍ୟ ଆମର ଅମୂଲ୍ୟ ସଂପଦ। ସେହି ମୌଖିକ ସାହିତ୍ୟ ମଧ୍ୟରେ ସେମାନଙ୍କର ସରଳ ସ୍ୱଚ୍ଛନ୍ଦ ଜୀବନ ପ୍ରଣାଳୀ, ସେମାନଙ୍କର ସଂସ୍କାର, ବିଶ୍ୱାସ, ଐତିହ୍ୟ ଓ ପରମ୍ପରାର ନିଜସ୍ୱ ବୈଶିଷ୍ଟ୍ୟ ଫୁଟି ଉଠିଛି। ସେଗୁଡ଼ିକ ଯଥାଯଥ ଭାବରେ ସଂଗୃହୀତ ତଥା ଲିପିବଦ୍ଧ ହେବା ଉଚିତ। ଅବଶ୍ୟ ଏଥିପାଇଁ ଯେ ଉଦ୍ୟମ ହୋଇ ନାହିଁ, ଏକଥା ନୁହେ। ଶ୍ରୀ ଉଦୟନାଥ ଷଡ଼ଙ୍ଗୀ 'ଆଦିବାସୀ କଥା' ସୂର୍ଯ୍ୟ ନାରାୟଣ ଦାସ 'ଆଦିବାସୀ ଗଳ୍ପ', ଡଃ ଶ୍ୟାମ ସୁନ୍ଦର ମହାପାତ୍ର 'ସାନ୍ତାଳ ଲୋକ କାହାଣୀ' ଇତ୍ୟାଦି ପୁସ୍ତକ ପ୍ରକାଶ କରିଅଛନ୍ତି। ଡଃ କୁଞ୍ଜବିହାରୀ ଦାଶ ଏବଂ ଡଃ କୃଷ୍ଣଚରଣ ବେହେରା ସେମାନଙ୍କ ଗବେଷଣା ନିବନ୍ଧରେ ଆଦିବାସୀ ଲୋକଗଳ୍ପ ସଂପର୍କରେ ବିଚାର ବିମର୍ଶ ଦେଇଅଛନ୍ତି। ଔପନ୍ୟାସିକ ଗୋପୀନାଥ ମହାନ୍ତି ତାଙ୍କର 'ଅମୃତର ସନ୍ତାନ', 'ପରଜା', 'ଶିବୁ ଭାଇ', 'ଦାଦି ବୁଢ଼ା' ଇତ୍ୟାଦି ପୁସ୍ତକରେ ଏ ସବୁର ପରିବେଷଣ ପାଇଁ ସଫଳ ଦ୍ୟମ କରିଅଛନ୍ତି। ଏହା ବ୍ୟତୀତ ଭେରିଅର୍ ଏଲ୍ୱିନ୍ ପ୍ରାୟ ସହସ୍ରାଧିକ ଆଦିବାସୀ ଗଳ୍ପ ସଂଗ୍ରହ କରି ଏକ ଇଂରାଜୀ ପୁସ୍ତକାକାରରେ ପ୍ରକାଶ କରିଅଛନ୍ତି।[୨] ଏହି ଆଦିବାସୀ ଲୋକ ଗଳ୍ପଗୁଡ଼ିକ ଯେ ଓଡ଼ିଆ କାହାଣୀ ସାହିତ୍ୟକୁ କେତେକାଂଶରେ ଋଦ୍ଧିମନ୍ତ କରିଛନ୍ତି, ଏହା ନିଃସନ୍ଦେହରେ କୁହାଯାଇପାରେ। ସେହି ଆଦିବାସୀମାନଙ୍କ ମଧ୍ୟରେ ନିର୍ଦ୍ଦିଷ୍ଟ

୧। ମହାନ୍ତି ଡଃ ବଂଶୀଧର-ଓଡ଼ିଶାର ଆଦିବାସୀ ସଂସ୍କୃତି, ପ୍ରକାଶକ ଆଦିବାସୀ ଭାଷା ଓ ସଂସ୍କୃତି ଏକାଡ଼େମୀ-୧୯୯୦, ପୃଷ୍ଠା - ୧୪୦-୧୪୨।

୨। Edwin verrier - Tribal Myths of Orissa, Oxford University Press, 1954.

ଗଳ୍ପ କଥକ ନ ଥିଲେ। ସେ ସଂପର୍କରେ ମତପ୍ରଦାନ କରି ଡଃ କୃଷ୍ଣ ଚରଣ ବେହେରା କହନ୍ତି, ''ଆଦିବାସୀ ସମାଜରେ କୌଣସି ନିର୍ଦ୍ଦିଷ୍ଟ ଗଳ୍ପ କହିବା ବ୍ୟକ୍ତି ପ୍ରାୟ ନାହାନ୍ତି। କହୁ କହୁ ଜଣେ ଗଳ୍ପର ଖିଅ ହଜାଇ ଦେଲେ, ଅନ୍ୟ ଜଣେ ଆଗେଇ ଆସି ଗଳ୍ପଟି କହି ଶେଷ କରେ। ତେଣୁ ଆଦିବାସୀ ଗଳ୍ପ କୌଣସି ବ୍ୟକ୍ତି ବିଶେଷର ସୃଷ୍ଟି ବା ଉକ୍ତି ନୁହେ ବରଂ ଗୋଟିଏ ଗୋଷ୍ଠୀ ବା ସମାଜର ସୃଷ୍ଟି ବୋଇଲେ ଠିକ୍ ହେବ। ବିଭିନ୍ନ ଉତ୍ସବ ଅନୁଷ୍ଠାନରେ କିମ୍ବା ଅବସର ଯାପନ ସମୟରେ ଏହି ଗଳ୍ପଗୁଡ଼ିକ ବୋଲା ଯାଇଥାଏ। ମହୋତ୍ସବମୟ ପରିବେଶ ହିଁ ଆଦିବାସୀ ଗଳ୍ପର ଉତ୍ସ ଝରାଇବା ପାଇଁ ଏକାନ୍ତ ଅନୁକୂଳ।''[୩]

ବର୍ତ୍ତମାନ କେତେକ ଆଦିବାସୀ ସଂପ୍ରଦାୟର ପ୍ରମୁଖ କେତୋଟି ଗଳ୍ପ ସଂପର୍କରେ ବିଚାର ଆଲୋଚନା କରାଯାଉ। ଆମର କେତେକ ପୌରାଣିକ ଉପାଖ୍ୟାନ ଓ ଚରିତ୍ର ଆସିବାସୀ ଗଳ୍ପରେ ସ୍ଥାନ ଲାଭ କରି ଥିବାର ଦେଖାଯାଏ। ବିଶେଷକରି ଶିବ, ପାର୍ବତୀ, ଭୀମ, ଇନ୍ଦ୍ର, ରାମ, ଲକ୍ଷ୍ମଣ, ସୀତା, ସୂର୍ଯ୍ୟ, ଚନ୍ଦ୍ର ଇତ୍ୟାଦିଙ୍କ ରୂପ ବା ରୂପାନ୍ତର ସେମାନଙ୍କ ଗଳ୍ପରେ ପରିଲକ୍ଷିତ ହୁଏ। ପୁରାଣରେ ସର୍ପ ଶିବଙ୍କର ଅଳଙ୍କାର ଭାବରେ ଗୃହୀତ। କିନ୍ତୁ ଆଦିବାସୀ ସଂପ୍ରଦାୟର ଭୁଞ୍ଜିଆ ଗଳ୍ପରେ ସର୍ପ ମଧ ପାର୍ବତୀଙ୍କର ଅଳଙ୍କାର ଭାବରେ ଗ୍ରହଣ କରାଯାଇଅଛି। ପୃଥିବୀର ସର୍ଜନାପରେ ଶିବ ପାର୍ବତୀ ଏହାକୁ ପରିଦର୍ଶନ କରିବାକୁ ଆସି ପାତାଳପୁରରେ ମଧ ପ୍ରବେଶ କରିଥିଲେ। ସେତେବେଳେ ପାତାଳର ନାଗ ଶିବଙ୍କୁ ପ୍ରଣତି ଜଣାଇବା ସହ ତାଙ୍କ ଦେହରେ ଗୁଡ଼ାଇ ହୋଇ ଯାଇଥିଲା। କୌତୁହଳ ବଶତଃ ପାର୍ବତୀ ନାଗକୁ ସ୍ପର୍ଶ କରିବା ମାତ୍ରେ, ନାଗ ତାଙ୍କ ଦେହରେ ମଧ ଗୁଡ଼ାଇ ହୋଇଗଲା। ପାର୍ବତୀ ଭୟରେ ଚିତ୍କାର କରିବାରୁ ନାଗ ତାଙ୍କ ଦେହର ଅଳଙ୍କାର ହୋଇ ରହିବ ବୋଲି ଶିବ ନିର୍ଦ୍ଦେଶ ଦେଇଥିଲେ।[୪]

ରାମାୟଣର କାହାଣୀ କିଛିଟା ଭିନ୍ନ ଭାବରେ ସଉରା ଗଳ୍ପରେ ପରିବେଷିତ ହୋଇଥିବାର ଦେଖିବାକୁ ମିଳେ। ଅଯୋଧ୍ୟାର ରାଜା ଦଶରଥ ସର୍ବଦା ପ୍ରଜାଙ୍କ ଆଡ଼କୁ ଏକ ଅଙ୍ଗୁଳି ଦେଖାଇ କଥା କହୁଥିବାରୁ, ପ୍ରଜାମାନଙ୍କ ଅଭିଶାପରେ ଅଙ୍ଗୁଳିଟି ପଚି ନଷ୍ଟ ହୋଇ ଯାଉଥିଲା। ଗୁଣିଆ କିମ୍ବା ନାନା ପ୍ରକାର ଔଷଧ, ତାହାର ଉପଶମ କରି ପାରି ନଥିଲା। ଜ୍ୟୋତିଷ କହିଥିଲା, ରାମ ଲକ୍ଷ୍ମଣ ଯଦି ବାରବର୍ଷ ପାଇଁ ବନକୁ ଯାଆନ୍ତି, ସେ ଘା ଭଲ ହୋଇଯିବ। ଫଳରେ ରାମ ଓ ଲକ୍ଷ୍ମଣ ବାର ବର୍ଷ ପାଇଁ ବନକୁ ଯାଇଥିଲେ ଏବଂ ବଣରୁ ଆଣିଥିବା ଔଷଧ ଲଗାଇବା ଫଳରେ ଦଶରଥଙ୍କର କ୍ଷତ ଭଲ ହୋଇ ଯାଇଥିଲା। ଏଠାରେ ରାମଚନ୍ଦ୍ରଙ୍କ ବନବାସ ପାଇଁ ମନ୍ଥରା ଓ କୈକେୟୀ କାରଣ ହୋଇ ନଥିଲେମଧ, ସଉରାମାନଙ୍କର ରାମାୟଣ ସଂପର୍କରେ ଥିବା ଜ୍ଞାନ ବିଷୟରେ ସହଜରେ ଜାଣି ହୁଏ। ଏଠାରେ ରାମଲକ୍ଷ୍ମଣଙ୍କ ବନଗମନ ସଂପର୍କରେ ଆଦିବାସୀ କଥାକାର ସଂପୂର୍ଣ୍ଣ ଏକ ଅଭିନବ ପରିକଳ୍ପନା କରିଅଛନ୍ତି।[୫]

ପୂର୍ବକାଳରେ ଆଦିବାସୀମାନେ ଉଲଗ୍ନ ରହୁଥିଲେ। କାଳକ୍ରମେ ସେମାନେ ଗଛର ବଳ୍କଳ ଏବଂ ପରେ କଉପୁନି ଭାବରେ ଲୁଗା ପିନ୍ଧି ଅଛନ୍ତି। କିନ୍ତୁ ଏବେ ମଧ କୋରାପୁଟର ବଣ୍ଡା ସଂପ୍ରଦାୟ ଆଦିମ ଅବସ୍ଥାରେ ଅଛନ୍ତି। ବଣ୍ଡା ସ୍ତ୍ରୀମାନେ ମଧ ଉଲଗ୍ନ ରହୁଛନ୍ତି। ଏ ସଂପର୍କରେ ସେମାନଙ୍କ ମଧ୍ୟରେ ଏକ ଲୋକ କଥା ପ୍ରଚଳିତ। ରାମଚନ୍ଦ୍ର ଅନୁଜ ଲକ୍ଷ୍ମଣ ଓ ପତ୍ନୀ ସୀତାଙ୍କ ସହ ବନବାସ ସମୟରେ କୋରାପୁଟର ଦଣ୍ଡକାରଣ୍ୟରେ କିଛି କାଳ ଅତିବାହିତ କରିଥିଲେ। ସେହି ସମୟରେ ଦିନେ ସୀତା ଠାକୁରାଣୀ ଏକ ନାଳରେ ସ୍ନାନ କରୁଥିଲେ। ସ୍ନାନ ସମୟରେ ତାଙ୍କର ନଗ୍ନ ଶରୀରକୁ ଦେଖି କେତେକ ବଣ୍ଡା ରମଣୀ ପରିହାସ ଛଳରେ ହସି ଦେଇଥିଲେ। ଫଳରେ ସୀତା ଦେବୀ ରାଗି ଯାଇ ଅଭିଶାପ ଦେଇଥିଲେ ଯେ ସେମାନେ ଚୀରଦିନ ଉଲଗ୍ନ ହୋଇ ରହିବେ। ଫଳରେ ବଣ୍ଡା ରମଣୀମାନଙ୍କର ଆଜି ଏଇ ଅବସ୍ଥା।[୬] ଏହିପରି ଏକ ଲୋକ କାହାଣୀ ବଣ୍ଡା ସଂପ୍ରଦାୟ ମଧ୍ୟରେ ପ୍ରଚଳିତ ହୋଇ ସେମାନଙ୍କର ବିଶ୍ୱାସ ସଂପର୍କରେ ସୂଚନା ପ୍ରଦାନ କରେ।

କୋରାପୁଟ ଗଦବା ଓ ବଣ୍ଡା ସଂପ୍ରଦାୟ ମଧ୍ୟରେ ଭୀମ ବର୍ଷାର ଦେବତା ଭାବରେ ପୂଜା ପାଇଥାନ୍ତି। ଥରେ ପୃଥିବୀରେ ଦୀର୍ଘଦିନ ପର୍ଯ୍ୟନ୍ତ ବର୍ଷା ନ ହେବାରୁ ଦୁର୍ଭିକ୍ଷ ପଡ଼ିଗଲା। ଏହାର ନିରାକରଣ ପାଇଁ ଦେବତାମାନେ ଈଶ୍ୱରଙ୍କୁ ଗୁହାରି କଲେ। ଈଶ୍ୱରଙ୍କ ଆଜ୍ଞାରେ ଦେବତାମାନେ ଇନ୍ଦ୍ରଙ୍କ ସହ ଯୁଦ୍ଧ କରି ତାଙ୍କୁ ପରାସ୍ତ କରିବା ସହ ବନ୍ଦୀ କଲେ। ଇନ୍ଦ୍ର ଯେଉଁ ପୁଷ୍କରିଣୀରେ ଜଳ ରଖିଥିଲେ, ତାର ହିଡ଼ କେହି ଭାଙ୍ଗି ପାରିଲେ ନାହିଁ। କେବଳ ଭୀମ ହିଁ ସେହି ହିଡ଼ ଭାଙ୍ଗିବାକୁ ସକ୍ଷମ ହେଲେ। ପରେ ଇନ୍ଦ୍ରଙ୍କ କନ୍ୟା ଇନ୍ଦ୍ରଙ୍କୁ ମୁକ୍ତ କରି ପୁଷ୍କରିଣୀର ହିଡ଼ ପୁଣି ବାନ୍ଧି ଦେଲେ। ଇନ୍ଦ୍ର ଏକ ସର୍ତ୍ତ ରଖିଲେ ଯେ, ଯିଏ ଦୁଇଟି ପୋଢ଼କୁ ମଣ କରି ଜମିରେ ହଳ କରିପାରିବ, ତାକୁ ତାଙ୍କର କନ୍ୟାକୁ ବିବାହ ଦେବେ। ଭୀମ ଏହା କରିବାକୁ ସକ୍ଷମ ହେବାରୁ ଇନ୍ଦ୍ର ତାଙ୍କୁ ଜାମାତା ଭାବରେ ଗ୍ରହଣ କରିବାକୁ ସମ୍ମତ ହେଲେ। ଇନ୍ଦ୍ର ଭୀମଙ୍କୁ ମାଛ ଆଣିବା ପାଇଁ କହିବାରୁ, ଭୀମ ଏବଂ ଇନ୍ଦ୍ରଙ୍କ କନ୍ୟା ସେ ପୁଷ୍କରିଣୀରୁ ହିଡ଼କାଟି ମାଛ ଧରିଲେ। ସେଇ ପୁଷ୍କରିଣୀରୁ

---

୩। ବେହେରା ଡଃ କୃଷ୍ଣ ଚରଣ -ଓଡ଼ିଆ ଉପନ୍ୟାସ, ପ୍ରକାଶକ -ଜଗନ୍ନାଥ ରଥ, ପ୍ରକାଶ କାଳ-ମାର୍ଚ୍ଚ, ୧୯୬୮, ପୃଷ୍ଠା -୧୩
୪। ବେହେରା ଡଃ କୃଷ୍ଣ ଚରଣ, ଓଡ଼ିଆ ଉପନ୍ୟାସ, ପ୍ରକାଶକ - ଜଗନ୍ନାଥ ରଥ, ପ୍ରକାଶ କାଳ - ମାର୍ଚ୍ଚ - ୧୯୬୮, ପୃଷ୍ଠା -୨୩-୨୪
୫। ତତ୍ରୈବ - ପୃଷ୍ଠା-୨୪-୨୫।
୬। ମିଶ୍ରବଳରାମ - ଆଦିବାସୀ ସମାଜ ଓ ସଂସ୍କୃତି ଭଗୀରଥ ପ୍ରକାଶନ-୧୯୮୩ ପୃଷ୍ଠା - ୨୦।

**ବହି ଯାଉଥିବା ପାଣି ହିଁ ପୃଥିବୀରେ ବର୍ଷା ବୋଲି ସେଇମାନଙ୍କର ବିଶ୍ୱାସ। ତେଣୁ ଇନ୍ଦ୍ର ନୁହନ୍ତି, ସେମାନଙ୍କ ମତରେ ଭୀମ ହିଁ ତାଙ୍କର ବର୍ଷାର ଦେବତା। ଭୀମ ବର୍ଷାର ଦେବତା ଭାବରେ ମଧ୍ୟ ଭାରତର ଅନେକ ଜାତି ଓ ଆଦିମ ଅଧିବାସୀମାନଙ୍କ ଦ୍ୱାରା ପୂଜିତ ହୁଅନ୍ତି। ବିଶେଷ କରି ଗଣ୍ଡ, କନ୍ଧ, ଭୂଞ୍ଜିଆ, ପହରିଆ ପରଜା, ଭତରା ଇତ୍ୟାଦି ସଂପ୍ରଦାୟ ଦ୍ୱାରା ଭୀମ ଉପାସନା କରାଯାଉଥିବା ଜାଣିହୁଏ।**[୭]

ଖଡ଼ିଆ ଭାଷାରେ ସୂର୍ଯ୍ୟ ଓ ଚନ୍ଦ୍ର ସଂପର୍କରେ ଏକ କୌତୁହଳ ପ୍ରଦ କାହାଣୀ ପ୍ରଚଳିତ। ସେମାନଙ୍କର ବିଶ୍ୱାସ ଥିଲା ଯେ, ଚନ୍ଦ୍ର ଓ ସୂର୍ଯ୍ୟଙ୍କର ଅନେକ ପିଲାପିଲି ଥିଲେ। ଥରେ ଚନ୍ଦ୍ର ପୋଖରୀରୁ କନ୍ଦା ସିଝାଇ ଖାଉଥିବାବେଳେ, ସେଠାରେ ସୂର୍ଯ୍ୟ ପହଞ୍ଚିଲେ। ସୂର୍ଯ୍ୟଙ୍କୁ ମଧ୍ୟ ତାହା ଖାଇବାକୁ ଦେଲେ ଏବଂ ନିଜ ପିଲାମାନେ ପରସ୍ପର ମଧ୍ୟରେ କଳି କଜିଆ କରୁଥିବାରୁ ତାଙ୍କୁ ସିଝାଇ ଖାଉଛନ୍ତି ବୋଲି କହିଲେ। ତାହା ଅତ୍ୟଧିକ ସ୍ୱାଦୁଯୁକ୍ତ ହୋଇଥିବାରୁ ସୂର୍ଯ୍ୟ ମଧ୍ୟ ନିଜ ପିଲାମାନଙ୍କୁ ମାରି ସିଝାଇ ଖାଇଲେ। କିନ୍ତୁ ତାହା ଭଲ ନ ଲାଗିବାରୁ ଚନ୍ଦ୍ର ଯେ ତାଙ୍କୁ ଠକି ଦେଇଛନ୍ତି ଏକଥା ସେ ଜାଣି ପାରିଲେ। ତେଣୁ ଚନ୍ଦ୍ରଙ୍କୁ ଅଭିଶାପ ଦେଲେ ଯେ ସେ ଏକ ପକ୍ଷ ମରିଲେ ଏକ ପକ୍ଷ ଜୀଇଁବେ। ତେଣୁ ଆଜି ଚନ୍ଦ୍ରର ଏ ଅବସ୍ଥା ଏବଂ ସୂର୍ଯ୍ୟ ଏକୁଟିଆ ହୋଇ ରହିଛନ୍ତି।[୮]

କୋରାପୁଟର ଡୋଙ୍ଗରିଆ କନ୍ଧମାନଙ୍କର ଏକ ଲୋକ ଗଳ୍ପକୁ ଆଲୋଚନା କରାଯାଉ। ନିମଗିରିର ଡୋଙ୍ଗରିଆ କନ୍ଧମାନେ ବିଷମ କଟକର ରାଜ ପରିବାର ତରଫରୁ ଅନୁଷ୍ଠିତ ଦଶହରା ଉତ୍ସବ ସମୟରେ ବଳୀ ପଡ଼ିଥିବା ମାଂସ ଖଣ୍ଡ ନେଇଥାନ୍ତି। ଏହି 'ମାଂସ ଖଣ୍ଡ ନେବା ପ୍ରଥା' କେଉଁ ଆଦିମ କାଳରୁ ଏହି ଅଞ୍ଚଳରେ ପ୍ରଚଳିତ ହୋଇ ଆସୁଅଛି। ଏହି ସଂପର୍କରେ ଏକ ଲୋକଗଳ୍ପ ପ୍ରଚଳିତ। ଅତୀତରେ କନ୍ଧ ଦୁଇ ଭାଇ ସେଠାରେ ରାଜତ୍ୱ କରୁଥିଲେ। ବଡ଼ ଭାଇ ନିମଗିରିର ଏବଂ ସାନଭାଇ ବିଷମ କଟକର ରାଜାଥିଲେ। ଥରେ ବଡ଼ ଭାଇ ମୃଗୟା ଯାଉଥିବା ବେଳେ ସାନ ଭାଇ ତାଙ୍କର ରାଜ୍ୟ ଅଧିକାର କରି ନେଲା। ବଡ଼ ଭାଇ ଫେରି ସାନ ଭାଇର କୃପାପାତ୍ର ହୋଇ ରହିଲା। ବହୁଦିନ ପରେ ସାନ ଭାଇର ହୃଦୟ ପରିବର୍ତ୍ତନ ହେଲା। ସେ କହିଲା ବର୍ଷକରେ ଗୋଟିଏ ଦିନ ବଡ଼ ଭାଇର ଯାହା ଇଚ୍ଛା ସେ ସେହି ରାଜ୍ୟରୁ ନେଇ ଯାଇ ପାରିବ। ବଡ଼ ଭାଇ ଦଶହରା ଦିନଟିକୁ ବାଛି, ସେହି ଦିନ ମାଂସ ଖଣ୍ଡ ହିଁ ନେଇ ଯାଉଥିଲା। ବର୍ତ୍ତମାନ ମଧ୍ୟ ଡୋଙ୍ଗରିଆ କନ୍ଧମାନେ ନିଜକୁ ବିଷମ କଟକ ରାଜାଙ୍କର ବଡ଼ ଭାଇଙ୍କର ବଂଶଧର ବୋଲି ମନେ କରନ୍ତି। ଶାସନ ଅଧିକାରରୁ ବଞ୍ଚିତ ହୋଇଥିଲେ ମଧ୍ୟ ବଡ଼ ଭାଇ ବୋଧ' ସେଇମାନଙ୍କୁ ପରମ ସନ୍ତୋଷ ପ୍ରଦାନ କରିଥାଏ। ଏଠାରେ ସେମାନଙ୍କର ଉଦାରତା ସ୍ୱହଜରେ ଅନୁମେୟ।[୯]

କନ୍ଧମାନଙ୍କର 'ମେରିଆ' ବା ନରବଳୀ ପ୍ରଥା ବିଷୟରେ ଆମ୍ଭେମାନେ ଜାଣୁ। ସେମାନଙ୍କର ଅନେକ ଗଳ୍ପରେ ଦେବା ଦେବୀଙ୍କର କ୍ରୋଧ ବର୍ଣ୍ଣିତ। କନ୍ଧ ସଂପ୍ରଦାୟର ଏକ ଲୋକ ଗଳ୍ପରେ ଅଛି ଯେ, ଥରେ ଧରଣୀ ପେନୁ ଆମିଷ ଖାଇବା ପାଇଁ ଇଚ୍ଛାକରି ଅନ୍ୟ କୌଣସି ପ୍ରକାର ଭୋଗ ଗ୍ରହଣ କଲେ ନାହିଁ। ଶସ୍ୟ ଓ ମଦ୍ୟ ପରିବର୍ତ୍ତେ ସେ ମଣିଷ ଶରୀରର ରକ୍ତ ଚାହିଁଲେ। କିନ୍ତୁ ଆଦିବାସୀମାନେ ତାହା ପୂରଣ ନ କରିବାରୁ ଦେବୀ ରାଗିଗଲେ। ବର୍ଷା ହେଲା ନାହିଁ। ଦୁର୍ଭିକ୍ଷ ପଡ଼ିଗଲା। ଫସଲ ସବୁ ମରିଗଲା। ସେମାନେ ଖାଦ୍ୟ ଏପରିକି ପାଣି ଟୋପାଏ ମଧ୍ୟ ପିଇବାକୁ ପାଇଲେ ନାହିଁ। ଫଳରେ ଧରଣୀ ପେନୁଙ୍କଠାରେ କ୍ଷମା ପ୍ରାର୍ଥନା କରି ନରବଳୀ ଦେବା ପାଇଁ ସମ୍ମତ ହେଲେ। ସେହି ଦିନଠାରୁ ନରବଳୀ ପ୍ରଥା ସେମାନଙ୍କ ସଂପ୍ରଦାୟରେ ପ୍ରଚଳିତ ହୋଇ ଆସୁଛି।[୧୦] ଅବଶ୍ୟ ଆଜି ସେହି ଜଘନ୍ୟ ପ୍ରଥା ଅନେକାଂଶରେ ଦୂରୀଭୂତ ହେଲାଣି, କିନ୍ତୁ ବଡ଼ ଦୁଃଖ ଓ ପରିତାପର ବିଷୟ ହଜାର ବର୍ଷର ଆର୍ଯ୍ୟ ସଭ୍ୟତାର ପ୍ରଚଳନ ପରେ ମଧ୍ୟ ତାନ୍ତ୍ରିକ ବିଶ୍ୱାସ ଉପରେ ପ୍ରତିଷ୍ଠିତ ନରବଳୀ ପରି ଆଜି ଆମର ସଭ୍ୟ ସମାଜର ବହୁ ସ୍ଥଳରେ ନୃଶଂସ ପଶୁବଳୀ ପ୍ରଥାର ପ୍ରତିରୋଧ କରାଯାଇ ପାରିନାହିଁ।

କେତେକ ଆଦିବାସୀ ଲୋକ କାହାଣୀ ସହିତ ଓଡ଼ିଆ ଲୋକ କାହାଣୀର ସାମଞ୍ଜସ୍ୟ ପରିଲକ୍ଷିତ ହୁଏ। ସେଇ ସଂପର୍କରେ ଡଃ କୁଞ୍ଜବିହାରୀ ଦାଶ ତାଙ୍କର ଗବେଷଣା ନିବନ୍ଧରେ ସୂଚନା ପ୍ରଦାନ କରିଅଛନ୍ତି। ଓଡ଼ିଆ କାହାଣୀ 'କଞ୍ଚନବତୀ କଥା'ର ସାମ୍ୟ ସାନ୍ତାଳୀ 'ସାତବୟହା' ଗଳ୍ପରେ ଦେଖିବାକୁ ମିଳେ। କାଞ୍ଚନବତୀ ସାତ ଭାଇରେ ଗୋଟିଏ ଭଉଣୀ। ଦିନେ ସେ ଶାଗ କାଟୁ କାଟୁ ତାର ହାତ କାଟି ହୋଇ ରକ୍ତ ଶାଗରେ ମିଶିଗଲା। ସେହି ଶାଗ ଖାଇବା ବେଳେ ଅତ୍ୟନ୍ତ ସୁଆଦ ଲାଗିଲା। ସେ କଥା ଜାଣିବା ପରେ ଥରେ ତାର ସାନ ଭାଇ ଶାଶୁ ଘରେ ଚାଡ଼ିବା ବାହାନାରେ ନେଇ ବାଟରେ ବଣ ମଧ୍ୟରେ ତାକୁ ହତ୍ୟା କରିଛି। ସେହି ସ୍ଥାନରେ ଗୋଟିଏ କାଞ୍ଚନ ଗଛ ଉଠିଛି। ପରବର୍ତ୍ତୀ ସମୟରେ ସେଇ କାଞ୍ଚନ ଗଛକୁ ତାର ସ୍ୱାମୀ ସ୍ପର୍ଶ କରିବା ପରେ ସେ ପୁଣି ଜୀଇଁ ଉଠିଛି। ଏ କଥା ଜାଣିବା ପରେ ତାର ଛଅ ଭାଇ ଓ ଜାଆମାନେ ସାନ ଭାଇ ଓ ତା ସ୍ତ୍ରୀକୁ ଧାନ ପାଇଁ ଖୋଳା ଯାଇଥିବା ଖଣିରେ ପେଲି ପୋତି ଦେଇଛନ୍ତି।[୧୧]

ସାନ୍ତାଳୀ ଗଳ୍ପରେ ଅନୁରୂପ ବର୍ଣ୍ଣନା ରହିଛି। ଅନ୍ୟ ଭାଇମାନଙ୍କର ବାଧ ବାଧକତାରେ ସାନ ଭାଇ ବଣରେ ତୀର

---

୭। ମିଶ୍ର ଡଃ ମହେନ୍ଦ୍ର କୁମାର, ପଶ୍ଚିମ ଓଡ଼ିଶାର ଲୋକ ସଂସ୍କୃତି, ପ୍ରକାଶକ-ଫ୍ରେଣ୍ଡସ ପବ୍ଲିଶର୍ସ, ପ୍ରକାଶକାଳ-୧୯୯୦, ପୃଷ୍ଠା-୧୧୨
୮। ଦାସବାସୁ ଡଃ ଅଶୋକ କୁମାର, ଖଡ଼ିଆ ପ୍ରକାଶକ-ଆଦିବାସୀ ଭାଷା ଓ ସଂସ୍କୃତି ଏକାଡେମୀ, ପ୍ରକାଶକାଳ-୧୯୯୧, ପୃଷ୍ଠା-୫୬-୫୭।
୯। ମିଶ୍ର ଡଃ ପ୍ରସନ୍ନ କୁମାର, ବିଶ୍ୱ ଭାରତୀ ଦୀପିକା (ଆଦିବାସୀ ଭାଷା ଓ ସଂସ୍କୃତି), ପ୍ରକାଶ-ବିଶ୍ୱଭାରତୀ ଓଡ଼ିଆ ବିଭାଗ-୧୯୮୨, ପୃଷ୍ଠା-୬୬।
୧୦। ବେହେରା ଡଃ କୃଷ୍ଣ ଚରଣ - ଓଡ଼ିଆ ଉପନ୍ୟାସ, ପୃଷ୍ଠା-୧୯-୨୦
୧୧। ଦାଶ ଡଃ କୁଞ୍ଜ ବିହାରୀ - ଲୋକଗଳ୍ପ ସଞ୍ଚୟନ, ପ୍ରକାଶକ - ଓଡ଼ିଶା ସାହିତ୍ୟ ଏକାଡେମୀ, ଦ୍ୱିତୀୟ ମୁଦ୍ରଣ-୧୯୭୨, ପୃଷ୍ଠା-୪୭୧-୪୭୩

ମାରି ଭଉଣୀକୁ ହତ୍ୟା କରିଛି। କିନ୍ତୁ ଅନ୍ୟମାନେ ତାର ମାଂସ ଖାଇଥିବା ବେଳେ ସାନ ଭାଇ ସେ ମାଂସ ଖାଇନି। ସେଇ ସ୍ଥାନରେ ଗୋଟିଏ ଲାଉ ଗଛ ଉଠିଛି। ଫଳିଥିବା ଏକ ମାତ୍ର ଲାଉରେ ଗୋଟିଏ ଯୋଗୀ କେନ୍ଦରା ତିଆରି କରିଛି। ସେଇ କେନ୍ଦରା ଭିତରୁ ପରେ ଭଉଣୀ ବାହାରିଛି ଏବଂ ସାନଭାଇ ସହିତ ସୁଖରେ ରହିଛି।[୧୨] ଓଡ଼ିଆ ଗଳ୍ପରେ ସାନଭାଇ ଭଉଣୀର ନିର୍ମମ ଶତ୍ରୁ ହୋଇଥିବା ବେଳେ ଆଦିବାସୀ ଗଳ୍ପରେ ସାନଭାଇ ଭଗିନୀ ପ୍ରତି ସ୍ନେହଶୀଳ ହୋଇପାରିଛି। 'ବିରହର୍' ଓ 'ହୋ' ଗଳ୍ପରେ ଏହି କାହାଣୀ ସାମାନ୍ୟ ପରିବର୍ତ୍ତିତ ହୋଇ ଚିତ୍ରିତ ହୋଇଛି। 'ବିରହର୍' ଗଳ୍ପରେ ସେଠାରେ ଲାଉ ଗଛ ପରିବର୍ତ୍ତେ ବାଉଁଶ ଗଛ ଉଠିଛି। ସେହି ବାଉଁଶରେ ବଂଶୀ ତିଆରି କରି ଜଣେ ଭିକାରୀ ବଜାଇଛି। ପରେ ସେଇ ବଂଶୀ ସାନ ଭାଇ କିଣି ନେଇଛି ଓ ସେଥିରୁ ଭଉଣୀ ବାହାରି ସାନ ଭାଇ ସହ ମିଳିମିଶି ରହିଛି। 'ହୋ' ଗଳ୍ପରେ ଭାଇମାନେ ଭଉଣୀକୁ ମାରି ମାଂସ ଖାଇବା ପରେ ସାନଭାଇ ବଣରୁ ଫେରି ନାହିଁ। ସେଠାରେ କୁଡ଼ିଆ କରି ରହିଛି। ଦିନେ ତାର ଭଉଣୀ ଜୀଇଁ ଉଠିଛି। ପରେ ଜଣେ ରାଜା ପାରିଧି କରିବା ପାଇଁ ଆସି ଭଉଣୀକୁ ବାହା ହୋଇଛନ୍ତି ଓ ତାର ସାନ ଭାଇକୁ ରାଜ୍ୟରୁ ଅଧେ ଦେଇଛନ୍ତି। ଏହି କାହାଣୀରୁ ଓଡ଼ିଆ କାହାଣୀଟି ସୃଷ୍ଟି ହୋଇଥିବା ସମ୍ଭବ।

ପୁଣି ଓଡ଼ିଆ 'କଳରେଇ ଫୁଲ' କାହାଣୀରେ ଭାଇ ସହିତ ଭଉଣୀର ବିବାହ ପରିକଳ୍ପନା ଅବୈଧ ଓ ଅସଙ୍ଗତ। କଳରେଇର ଭାଇ ଗୋଟିଏ ଲାଲ୍ ଫଳ ରଖି ପ୍ରତିଜ୍ଞା କରିଥିଲା ଯେ ଯିଏ ସେ ଫଳଟିକୁ ଖାଇବ, ସେ ତାକୁ ବିବାହ କରିବ। କଳରେଇ ଏତେ କଥା ଜାଣେ ନାହିଁ। ଭୁଲରେ ଫଳଟି ଖାଇ ଦେଇଥିବାରୁ ତାର ଭାଇ ତାକୁ ବିବାହ କରିବ ବୋଲି ଜିଦ୍ ଧରିଛି। ଫଳରେ ଅନ୍ୟ ଉପାୟ ନ ପାଇ କଇରେଇ ଗଡ଼ିଆକୁ ଡେଇଁ ଆତ୍ମହତ୍ୟା କରିଛି। ଏହାର ପରିଣତିରେ ଭାଇ ଭଉଣୀ ବିବାହର ଭୟାବହତା ଦେଖାଇ ଦିଆ ଯାଇଛି।[୧୩] ଆଦିବାସୀ ଲୋକ ଗଳ୍ପରେ ମଧ୍ୟ ଏହି କାହାଣୀର ପ୍ରସାର ବହୁଳ ଭାବରେ ଦେଖିବାକୁ ମିଳେ। 'ବାଇଗ' ଗଳ୍ପରେ 'ଲାଲ ଫଳ' ପରିବର୍ତ୍ତେ 'ଛତୁ' ପ୍ରସଙ୍ଗ କୁହାଯାଇଛି। 'ଭଉଣୀ ଛତୁ ଖାଇ ବିବାହ କରିବାକୁ ବାଧ ହୋଇଛି। ଦୁହେଁ ରାତ୍ରିକ ପାଇଁ ଏକ ଶଯ୍ୟାରେ ଶୋଇ, ଭାଇ ଭଉଣୀକୁ ହତ୍ୟା କରି ପରେ ଆତ୍ମହତ୍ୟା କରିଛି। 'ଗଣ୍ଡ' ଗଳ୍ପରେ ଭାଇ ଓ ଭଉଣୀ ଭିତରେ ବିବାହ ହୋଇ ନାହିଁ ବରଂ କଳଙ୍କ ଓ ଲୋକ ଲଜ୍ୟାରୁ ରକ୍ଷା ପାଇବା ପାଇଁ ସେମାନେ ଆତ୍ମହତ୍ୟା କରିଛନ୍ତି। 'ସାନ୍ତାଳୀ' ଗଳ୍ପରେ ଫଳ ବା ଛତୁ ପରିବର୍ତ୍ତେ ଗୋଟିଏ ଫୁଲ ରଖିବା କଥା କୁହାଯାଇଛି। ଭଉଣୀ ଫୁଲଟି ମୁଣ୍ଡରେ ପିନ୍ଧିବାରୁ ଭାଇ ଭଉଣୀ ମଧ୍ୟରେ ବିବାହ ଅନୁଷ୍ଠିତ ହୋଇଛି। ଭାଇ ସହିତ ଏକ ଶଯ୍ୟାରେ ଶୟନ କରି ଭଉଣୀ ଆତ୍ମହତ୍ୟା କରିଛି ପରେ ଭାଇ ମଧ୍ୟ ନିଜକୁ ନିହତ କରିଛି। ଏଇ ମୂଳ କାହାଣୀରୁ ଓଡ଼ିଆ କାହାଣୀଟି ଯେ ସୃଷ୍ଟି ହୋଇଛି ଏଥିରେ ସନ୍ଦେହ ନାହିଁ, ଅବଶ୍ୟ ଭଉଣୀ ଓ ଭାଇ ଆତ୍ମହତ୍ୟା କରିବା ପରିବର୍ତ୍ତେ, ଲଜ୍ୟାହେତୁ ଭଉଣୀ ଗଡ଼ିଆକୁ ଡେଇଁ ଆତ୍ମହତ୍ୟା କରିବା ପ୍ରସଙ୍ଗ ଅଧିକ ବାସ୍ତବ ଓ ଯୁକ୍ତିଯୁକ୍ତ ହୋଇ ପାରିଛି। ଏହିପରି ଭାବରେ ଉଭୟ ଆର୍ଯ୍ୟ ଓ ଆଦିବାସୀ ଲୋକ କାହାଣୀ ମଧ୍ୟରେ ବହୁ ସାଦୃଶ୍ୟ ପରିଲକ୍ଷିତ ହୁଏ। ପ୍ରକୃତରେ ଉଭୟ ଗୋଷ୍ଠୀର ସୁ-ସମନ୍ୱୟ ହିଁ ଭବିଷ୍ୟତକୁ ସୁଖ ସମୃଦ୍ଧ କରି ଗଢ଼ି ତୋଳିବ। ଏହି ପ୍ରସଙ୍ଗରେ ଅଧ୍ୟାପକ ହାଡ଼ିବନ୍ଧୁ ମିର୍ଦ୍ଧା ମତ ଦିଅନ୍ତି - "ପ୍ରକୃତରେ କହିବାକୁ ଗଲେ ହରିହର ମିଳନ ପରି ଆର୍ଯ୍ୟ ଆଦିବାସୀର ଜାତୀୟ ସଂସ୍କୃତିର କ୍ଷୀର ନୀର ସଂପର୍କ ହିଁ ଓଡ଼ିଶା ଆଦିବାସୀ ସଂସ୍କୃତିର ବୈଶିଷ୍ଟ୍ୟ। ଯେତେ ଟଣା ଓଟରା କରି ମୁନି ଋଷି ବାଣୀ ବା ପୁରାଣ ଘାଣ୍ଟି ନିଜେ ଚକଟି ହେଲେ ମଧ୍ୟ ସମୁଦ୍ର ମନ୍ଥନରୁ ଅମୃତ ହିଁ ମିଳିବ। ଗବେଷଣା ମୃତ ନେବେ ଆଦିବାସୀ ଓ ବିଷନେବେ ପ୍ରତିକ୍ରିୟାଶୀଳ ପଣ୍ଡିତ ମନ୍ୟ।"[୧୪]

ଆଦିବାସୀମାନଙ୍କର ସରଳ ସ୍ୱଚ୍ଛନ୍ଦ ଜୀବନ ଯାତ୍ରା ପ୍ରଣାଳୀ ଅନେକ ଗଳ୍ପରେ ସଫଳ ଭାବରେ ରୂପାୟିତ ହୋଇଛି। ଏହି ଗଳ୍ପ ସମୂହ ତାଙ୍କର ପୂଜାପାର୍ବଣ, ଉତ୍ସବାନୁଷ୍ଠାନ, କୃଷି କାର୍ଯ୍ୟ ଆରମ୍ଭ ଓ ଫସଲ ଅମଳ ସମୟରେ କୁହାଯାଇଥାଏ। ଆମ ଓଡ଼ିଆ ଲୋକ କାହାଣୀ ପରି ବହୁ ଅଲୌକିକ ପରିକଳ୍ପନା ମଧ୍ୟ ଏଥିରେ ଦେଖିବାକୁ ମିଳେ। ଗଛ ଛୁଇଁ ଦେଲେ ମଣିଷ ହୋଇଯିବା, କେନ୍ଦେରା ଓ ବଂଶୀରୁ ସେ କନ୍ୟା ବାହାରିବା ପ୍ରସଙ୍ଗ ବାସ୍ତବ ନ ହେଲେ ମଧ୍ୟ ସେପରି ଅନେକ ଅସମ୍ଭବ, ଆଶ୍ଚର୍ଯ୍ୟ ଘଟଣା ସେଥିରେ ବର୍ଣ୍ଣିତ ହୋଇଛି। ସଂସ୍କୃତ ବା ପାଲି ଗଳ୍ପ ଭଳି ଏହା ନୀତି ମୂଳକ ବା ଉପଦେଶାତ୍ମକ ନ ହୋଇ ବରଂ ଅଧିକ ବାସ୍ତବଧର୍ମୀ ହୋଇ ପାରିଛି। ବରଂ ଜୀବନର ଅନୁଭୂତି, ଦୈନନ୍ଦିନ ଜୀବନର ଘଟୁଥିବା ବହୁ ମୂହୂର୍ତ୍ତଙ୍କର ଝଲକରେ ଏହା ରସାଣିତ। ଏ ଦୃଷ୍ଟିରୁ ଆଦିବାସୀ କଥାକାର ଗୁରୁ ବା ଶିକ୍ଷକ ନୁହେ ବରଂ ଜଣେ ନିଚ୍ଛକ ସାରସ୍ୱତ ସ୍ରଷ୍ଟା। ପରିଶେଷରେ ଡଃ କୃଷ୍ଣ ବେହେରାଙ୍କର ମତ ଉଦ୍ଧାର କରା ଯାଇ ଏତିକି କୁହାଯାଇପାରେ - "ଆଦିବାସୀ ଗଳ୍ପର କଳାଗତ ମୂଲ୍ୟ କୌଣସି ଗୁଣରେ ଊଣା ନୁହେ। ଏହାର ସରଳ ଓ ସାବଲୀଳ କଥନ ଭଙ୍ଗୀ ସର୍ବତ୍ର ଲକ୍ଷଣୀୟ। କେତେକ ଗଳ୍ପରେ କ୍ଷୁଦ୍ର କ୍ଷୁଦ୍ର ପଦ୍ୟ ବଚନିକା ସମାବେଶ କରା ଯାଇଥିବାରୁ ଏହା ଶ୍ରୋତାର କର୍ଣ୍ଣମନ ରସାୟନ କରିଥାଏ। ଅନେକ ଗଳ୍ପର ଆରମ୍ଭ ଓ ଅଗ୍ରଗତିରେ ଦ୍ୱନ୍ଦ୍ୱ ପ୍ରଚ୍ଛନ୍ନତା ଆଦି ସ୍ଥାନ ପାଇଥିବାରୁ ଶ୍ରୋତା ମନରେ ବିସ୍ମୟ, ଆବେଗ ଓ କୌତୂହଳ ସୃଷ୍ଟି ହୋଇଥାଏ। ସ୍ଥାନେ ସ୍ଥାନେ ଗଳ୍ପ ମଧ୍ୟରେ ରଙ୍ଗବ୍ୟଙ୍ଗ ପୁଟ ମଧ୍ୟ ପରିଲକ୍ଷିତ ହୁଏ। ସର୍ବୋପରି ସମସ୍ତ ପ୍ରକାର ସାହିତ୍ୟର ଯେଉଁ ମୌଳିକ ଉଦ୍ଦେଶ୍ୟ - ରସ ସୃଷ୍ଟି - ତାହା ଆଦିବାସୀ ଗଳ୍ପରେ ସମ୍ଭବ ହୋଇ ପାରିଛି। ତେଣୁ ସାହିତ୍ୟ କଳା ଦୃଷ୍ଟିରୁ ଏହାର ମୂଲ୍ୟାୟନ ଅହେତୁକ କିମ୍ବା ଅଯଥାର୍ଥ ନୁହେ।[୧୫]

*● ଅଧ୍ୟାପକ, ଓଡ଼ିଆ ବିଭାଗ, ବିକ୍ରମଦେବ କଲେଜ, ଜୟପୁର।*

---

୧୨। ମହାପାତ୍ର ଡଃ ଶ୍ୟାମ ସୁନ୍ଦର - ସାନ୍ତାଳ ଲୋକ କାହାଣୀ - ପ୍ରକାଶକ ଆଦିବାସୀ ଭାଷା ସଂସ୍କୃତି ଏକାଡେମୀ, ୧୯୯୦, ପୃଷ୍ଠା - ୩୮-୪୯।
୧୩। ଦାଶ ଶ୍ରୀ କୁଞ୍ଜ ବିହାରୀ-ଓଡ଼ିଆ ଲୋକଗୀତ ଓ କାହାଣୀ, ପ୍ରକାଶକ-ବିଶ୍ୱଭାରତୀ, ଶାନ୍ତିନିକେତନ, ଓଡ଼ିଆ ଗବେଷଣା ବିଭାଗ-୧୯୫୮, ପୃଷ୍ଠା-୪୨୦-୪୨୩।
୧୪। ମିର୍ଦ୍ଧା ହାଡ଼ିବନ୍ଧୁ, ଆଦିବାସୀଙ୍କ ପର୍ବ ପର୍ବାଣୀ, ଓଡ଼ିଆ ସାହିତ୍ୟ ଓ ଆଦିବାସୀ ସଂସ୍କୃତି, ଓଡ଼ିଶା ସାହିତ୍ୟ ଏକାଡେମୀ, ୧୯୮୧, ପୃଷ୍ଠା-୨୫୦-୨୫୧।
୧୫। ବେହେରା ଡଃ କୃଷ୍ଣ ଚରଣ, ଓଡ଼ିଆ ଉପନ୍ୟାସ, ଜଗନ୍ନାଥ ରଥ (ପ୍ରକାଶକ)-ପ୍ରଥମ ପ୍ରକାଶ ମାର୍ଚ୍ଚ-୧୯୬୮, ପୃଷ୍ଠା-୨୫।

# ଅନାଲୋଚିତ ପ୍ରତିଭା :- ନୀଳକଣ୍ଠ ଓ ବ୍ରଜବନ୍ଧୁ

ଶ୍ରୀ ଭାଗୀରଥି ପାତ୍ର

(୧)

"କିହେ ନୀଳକଣ୍ଠ କୃପାବିତର,
କେଶବ ହେ ଶ୍ୟାମ ତବ କିଙ୍କର।
କରୁଛି ଜଣାଣ ହେ ଦାମୋଦର,
କଳୁଷ ନାଶନ ବାନା ତୁମ୍ଭର ଯେ;
କରୁଣା ସାଗର ହରି,
କରେ ଚକ୍ରଧରି ରଖିଲ କରୀକି, କୁମ୍ଭୀର ମୁଖରୁ ହରି।"

ଏହି ପଂକ୍ତିଟି ସ୍ୱର୍ଗତଃ କବି ନୀଳକଣ୍ଠ ସାହୁଙ୍କ "ଶ୍ରୀହରି ଜଣାଣ" ଶୀର୍ଷକ ଚଉତିଶା ବହିରୁ ଉଦ୍ଧୃତ। କବି ୰ ସାହୁ ଜଣେ ଭକ୍ତ, ପ୍ରକୃତି ସୌନ୍ଦର୍ଯ୍ୟ ପିପାସୁ ଓ ବିରହୀ କବି ଭାବେ କୋରାପୁଟ ଜିଲ୍ଲାରେ ସୁଖ୍ୟାତ ହୋଇଥିଲେ। ସେ ଜୟପୁର ସହରସ୍ଥିତ ତତ୍କାଳୀନ ଜିଲ୍ଲା ବୋର୍ଡ଼ କାର୍ଯ୍ୟାଳୟରେ ବହୁ କାଳ କିରାନୀ ଏବଂ ପରେ ମୁଖ୍ୟ କିରାନୀ ଭାବେ ଅବସ୍ଥାପିତ ହୋଇ ରହିଥିଲେ। କିଛି କାଳ ପାଇଁ ଜୟପୁର ସରକାରୀ ଉଚ୍ଚ ବାଳିକା ବିଦ୍ୟାଳୟରେ ମୁଖ୍ୟ କିରାନୀ ଭାବେ ମଧ କାର୍ଯ୍ୟ କରିଥିଲେ।

କବି ନୀଳକଣ୍ଠ "ଶ୍ରୀହରି ଜଣାଣ" ନାମକ ଭକ୍ତି ଗୀତ ବର୍ଣ୍ଣମାଳାକ୍ରମ ଅନୁଯାୟୀ 'ନ'ଠାରୁ 'କ୍ଷ' ପର୍ଯ୍ୟନ୍ତ ଅନୁପ୍ରାସ ବିଶିଷ୍ଟ ଚଉତିଶା ପୁସ୍ତକ, "କବିତା କଲ୍ଲୋଳିନୀ" ନାମକ ବିଭିନ୍ନ ସ୍ୱାଦର କବିତା ସଂକଳନ, 'ବିଦାୟ' ନାମକ ବିରହ କବିତା ସଞ୍ଚୟନ ଇତ୍ୟାଦି ପ୍ରକାଶିତ ପୁସ୍ତକ ଲୋକ ପ୍ରିୟ ଅଟେ। 'ଉତ୍ତରା ବିଳାପ' ଶୀର୍ଷକ ପଦ୍ୟ ପୁସ୍ତକ ମଧ ପ୍ରକାଶିତ ହୋଇ କିଛି ବର୍ଷ ପରେ ଦୁଷ୍ପ୍ରାପ୍ୟ ହୋଇଥିଲା। ତାଙ୍କର ବହୁ ପାଣ୍ଡୁଲିପି ଓ ରଚନା ଅପ୍ରକାଶିତ ହୋଇ ରହିଥିଲା।

ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ସନ୍ନିକଟ ଭବାନୀପୁର ଗ୍ରାମରେ ତାଙ୍କ ମୂଳବଂଶର ପୂର୍ବଜଗଣ ଅବସ୍ଥାନ କରୁଥିଲେ। ତତ୍ପରେ ପାରଳାଖେମୁଣ୍ଡି ସ୍ଥାନାନ୍ତରିତ ହୋଇ ପରବର୍ତ୍ତୀ କାଳରେ କୋରାପୁଟ ଜିଲ୍ଲାର ଜୟପୁର ସହର ବାସିନ୍ଦା ଭାବେ ବସବାସ କଲେ।

୰ ସାହୁ ତା: ୬-୧୧-୧୯୦୩ ମସିହାରେ ତାଙ୍କ ମାତା ମହିଙ୍କ ଗୃହ ମେରିଙ୍ଗି ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ। ପାଞ୍ଚବର୍ଷ ବୟସରେ ଜୟପୁର ଆସି ସ୍ଥାୟୀ ଭାବେ ଅବସ୍ଥାନ କଲେ ଏବଂ ବାଲ୍ୟ, ଯୌବନ ଓ ପ୍ରୌଢ଼ବସ୍ଥା ବିତାଇ ଶେଷ ଜୀବନ ସମୟକୁ ନବରଙ୍ଗପୁର ସହରର ବାଦାମ ସାହିରେ ବାସ ଭବନ ନିର୍ମାଣ କରି କିଛି ବର୍ଷ ନିଜର କବି ଜୀବନ ଅତିବାହିତ କରିଥିଲେ। ତାହାଙ୍କ ପିତାଙ୍କ ନାମ କାଶୀବିଶ୍ୱନାଥ ସାହୁ ଏବଂ ମାତାଙ୍କ ନାମ କମଳାଦେବୀ ଥିଲା। କବି ଚଉଦବର୍ଷ ବୟସରେ ମାତୃହରା ହୋଇ ପିତାମହୀ ପୁନ୍ନାଦେବୀଙ୍କ ଦ୍ୱାରା ପ୍ରତିପାଳିତ ହୋଇଥିଲେ। ଜୟପୁର ଉଚ୍ଚ ବିଦ୍ୟାଳୟରେ ତାଙ୍କ ଶିକ୍ଷା ସମାପ୍ତ ହୋଇଥିଲା।

୰ ନୀଳକଣ୍ଠ ସାହୁ ୧୯୪୪ ଖ୍ରୀଷ୍ଟାବ୍ଦରୁ ୧୯୪୯ ପର୍ଯ୍ୟନ୍ତ ରାୟଗଡ଼ା ତାଲୁକା ବୋର୍ଡ଼ରେ ଶିକ୍ଷାବିଭାଗ କିରାଣୀ ରୂପେ କାର୍ଯ୍ୟକରି ତତ୍ପରେ କୋରାପୁଟ ଜିଲ୍ଲାବୋର୍ଡ଼ରେ କାର୍ଯ୍ୟକରି ୧୯୫୦ ଜାନୁୟାରୀ ପହିଲାରେ ଜୟପୁର ବଦଳି ହେଲେ। ବୋର୍ଡ଼ହାଇସ୍କୁଲରେ ମଧ କାର୍ଯ୍ୟରତ ରହି ସେହି ଜୟପୁରରେ ହିଁ ସେ ତା: ୧-୬-୧୯୬୧ ଖ୍ରୀଷ୍ଟାବ୍ଦରେ ଚାକିରୀରୁ ଅବସର ଗ୍ରହଣ କଲେ। ତତ୍ପରବର୍ତ୍ତି କାଳରେ ନବରଙ୍ଗପୁରରେ ଅବସର ଜୀବନ ବିତାଇଥିଲେ। ସେ କହୁଥିଲେ, "ମୋର କର୍ମମୟ ଜୀବନ କାଳରେ ବହୁ କବିତା ସୃଷ୍ଟି କରି ବହୁ ଶ୍ରୋତାଙ୍କୁ ଖୋଜିଛି, କାର୍ଯ୍ୟାଳୟ ସହକର୍ମୀ ତଥା ପରିଚିତ ଶିକ୍ଷିତ ବ୍ୟକ୍ତିମାନଙ୍କୁ କବିତା ଶୁଣାଇବାପାଇଁ ଚାହିଁଲେ ସମସ୍ତେ ମୁଖ ଫେରାଇ ନେଇ କହନ୍ତି - କଣ ମିଳିବ କବିତାରୁ ? ଆମର ସମୟ ନାହିଁ.......।" ପରିଶେଷରେ ନିଜର ଜ୍ୟେଷ୍ଠପୁତ୍ରଙ୍କ ସରକାରୀ ବାସଗୃହ ସୁନାବେଡ଼ାଠାରେ ତା. ୨୩ ଅଗଷ୍ଟ ୧୯୭୨ରେ କବିଙ୍କର ମହାପ୍ରୟାଣ ହୋଇଥିଲା।

ନୀଳକଣ୍ଠଙ୍କ ଅନ୍ତର ଭିତରେ କବି ପ୍ରତିଭା ଭରପୁର ଥିଲା, ସରକାରୀ କର୍ତ୍ତବ୍ୟ ସଂପାଦନ ସହ ଅବସର ସମୟରେ ସେ କବିତା ରଚନା କରିବାରେ ମନୋନିବେଶ କରୁଥିଲେ। ସେ ଥିଲେ ବହୁ ସଂଖ୍ୟକ କବିତାର ସ୍ରଷ୍ଟା, କିନ୍ତୁ ସେହି ପ୍ରତିଭା ଅନ୍ତଃ ସଲୀଳା ଭଳି ଥିଲା, ତାଙ୍କ ସୃଷ୍ଟି ସମ୍ଭାର ବିଶେଷ ଭାବେ ଲୋକ ଲୋଚନକୁ ଆସି ନଥିଲା, ସେ ମଧ ଆପଣାର କୃତି ସମୂହକୁ ପ୍ରକାଶ କରିବାର ଦମ୍ଭ ପାଉ ନଥିଲେ।

ଦୁର୍ଭାଗ୍ୟକୁ ୧୯୫୮ ମସିହା ଡିସେମ୍ବର ୧୨ ତାରିଖ ମାର୍ଗଶୀର କୃଷ୍ଣ ନବମୀ ଦିନ ତାଙ୍କ ଦ୍ୱିତୀୟା ପତ୍ନୀ ଶଶୀରେଖାଙ୍କ ବିୟୋଗ ଘଟିଲା, ପ୍ରଥମା ପତ୍ନୀ ତିଳୋତ୍ତମା ମୃତ୍ୟୁ ହେବା ପରେ ସେ ଶଶୀରେଖାଙ୍କୁ ବିବାହ କରିଥିଲେ। ଜୀବନରେ ଦୁଇ ଦୁଇଟି ପ୍ରିୟତମାଙ୍କ ବିୟୋଗ ତାଙ୍କ ମନରେ ଦାରୁଣ ଆଘାତ ଦେଇଥିଲା। ଏହି ବିୟୋଗାତ୍ମକ ବା ବିରହମୂଳକ ପରିବେଶରେ ରହି ତତ୍ ସଂପର୍କ ଚିନ୍ତନରେ ସେ ରଚନା କଲେ ବହୁ କବିତା ଏବଂ ପ୍ରକାଶ କଲେ "ବିଦାୟ" ନାମକ ପୁସ୍ତିକା।

"ବିଦାୟ" ପୁସ୍ତିକା ଜୟପୁରଠାରୁ ୧୯୬୦ ମସୀହାରେ ପ୍ରକାଶ ପାଇଥିଲା। ତତ୍କାଳୀନ ମୁଦ୍ରାଙ୍କନର ଅସୁବିଧା ଯୋଗୁଁ ଏହା ବ୍ରହ୍ମପୁର ସହରର "ଓଡ଼ିଶା ପ୍ରିଣ୍ଟିଂ ୱାର୍କସ୍"ରେ ମୁଦ୍ରିତ ହୋଇଥିଲା। ଏହି ପୁସ୍ତିକାରେ ଅଷ୍ଟମ ସର୍ଗ ଭାବେ ଆଠଗୋଟି ଦୀର୍ଘ କବିତା ଏବଂ "ବଂଶାନୁ ଚରିତ" ଶୀର୍ଷକ ଏକ ବଡ଼ କବିତା ସନ୍ନିବେଶିତ ହୋଇଛି। ପ୍ରଥମ ସର୍ଗ ଆରମ୍ଭ କରନ୍ତି ଏହିପରି :-

**"ପ୍ରଭାତିଲା ବିଭାବରୀ ଦିଶିଲା ଉଜ୍ଜଳ,**
**ଅରୁଣ କଷାୟ ବାସ ଉଷା ମନୋହର।"**

୧୯୬୦ ମସିହାରେ ଏହି "ବିଦାୟ" ପୁସ୍ତିକା ଲୋକ ଲୋଚନକୁ ଆସିବା ପରେ ସେ ବିରହୀ କବି ଭାବେ ବେଶ୍ ଖ୍ୟାତ ହେଲେ ଏବଂ ଭକ୍ତି ରସାତ୍ମକ ଗୀତି କବିତା ପାଇଁ ତାଙ୍କର ଆଦର ଅବିସ୍ମରଣୀୟ।

(୨)

୰ ବ୍ରଜବନ୍ଧୁ ମିଶ୍ର ଅବିଭକ୍ତ କୋରାପୁଟ ଜିଲ୍ଲା ତଥା ଗଞ୍ଜାମ ଜିଲ୍ଲାର ଏକ ସୁପରିଚିତ ନାମ। ସେ ଏକାଧାରରେ ଉତ୍କଳର ଜାତିୟତାବାଦୀ, ସ୍ୱାଧୀନତା ସଂଗ୍ରାମୀ, ଗାନ୍ଧିବାଦୀ, ପ୍ରାବନ୍ଧିକ, ସଂସ୍କାରକ ଓ ଲେଖକ; "ମଧୁମୟ ସଂସାର" ବା "ଜୀବନ ହିତ ଦର୍ପଣ' ପ୍ରବନ୍ଧ ସଂକଳନ ପୁସ୍ତକର ପ୍ରଚ୍ଛଦପୃଷ୍ଠାରେ ପ୍ରକାଶ କରିଛନ୍ତି :—

**"ଘୋର ଅନ୍ଧକାର ଜୀବନ ଯାତ୍ରାରେ**
**ରତ୍ନଦୀପାବଳୀ ପରି**
**ମାନବ ସମାଜେ ହିତକୁ ପରଶୁ**
**ଏହି ଗ୍ରନ୍ଥ ଲେଖାବଳି।"**

ଏ' ପଂକ୍ତିରୁ ତାଙ୍କ ପୁସ୍ତକ ପ୍ରକାଶ ତଥା ରଚନାର ସଦୁଦ୍ଦେଶ ଅନୁମେୟ। ତାଙ୍କର ସମସ୍ତ ସୃଷ୍ଟି ସଂସ୍କାର ମୂଳକ, ସାଂଗଠନିକ, ସମାଜ, ଚେତନାମୟ ଓ ରଚନାତ୍ମକ। ସର୍ବୋପରି ଲୋକ ଶିକ୍ଷଣିୟ ଆଦର୍ଶଧର୍ମୀ ସେ ଜଣେ ଲେଖନଧର୍ମୀ ଲେଖକ କିମ୍ବା ବଚନଧର୍ମୀ ବକ୍ତା କେବଳ ନଥିଲେ - ମନ, ତନ, ବଚନ ଓ ଧନର ସମତା ରକ୍ଷାକରି ସଚ୍ଚୋଟ ନିରଳସ କର୍ମୀ ମଧ ଥିଲେ। ବହୁ ମହାମାନବଙ୍କ ସାହଚର୍ଯ୍ୟ ଲାଭ କରି ଗୁଣାଦିର୍ଶ ତାଲିମ-ପ୍ରାପ୍ତି କରିଥିବା ସେ ନିଜେ ସ୍ୱୀକାର କରି ଯାଇଛନ୍ତି।

ତାଙ୍କର 'ମଧୁମୟ ସଂସାର' ସହ ଅନ୍ୟାନ୍ୟ ପ୍ରବନ୍ଧ ସଂକଳନ - ସ୍ୱଗୃହ ଗଢ଼ା ବିଦ୍ୟାଳୟ, ଖଦଡ଼ ଦର୍ପଣ, ଆପଣଙ୍କ ପୁଅ ଝିଅ, ବାଲ୍ୟ ବିବାହର ଭୀଷଣ ଫଳ, ସୂତା କଟାର ଦଶୋପକାର, ଲଙ୍ଗଳ ଓ ଅରଟ, ଗାଁର କପାସୂତାରେ ଗାଁର ଖଦୀ, ଭଗବାନଙ୍କ ପ୍ରକୃତ ପୂଜା ଇତ୍ୟାଦି ଦଶ, ବାର ଖଣ୍ଡ ସଦୃଶ ପୁସ୍ତକ ପ୍ରକାଶ ପାଇଛି।

ତା' ବ୍ୟତୀତ ୰ ବ୍ରଜବନ୍ଧୁଙ୍କ ଲେଖନୀ ପ୍ରସୂତ- ପ୍ରଭାତ ସନ୍ଧ୍ୟା ନାମାବଳୀ ପାଠ, ଆମ ଘର ଔଷଧ ପେଡ଼ି, ସ୍ତ୍ରୀ ଜାତିର ଉନ୍ନତି ଦିନ, ଆଧୁନିକ ଦିରିବିଚ୍ଛି ସଭ୍ୟତା, ଗୃହ ଲକ୍ଷ୍ମୀ ଶାଶୁ - ବହୂ ସମସ୍ୟା, ଭିକ୍ଷା ଓ ଦାନର ପାତ୍ର, ସତ୍ ପୁରୁଷ ହେବାର ସାଧନା, ନୀତି ଓ ବୁଦ୍ଧି ଚାତୁର୍ଯ୍ୟ କଥାବଳୀ, ସାମାଜିକ ସେବା ବିଭାଗ ହିଁ ଜାତି, ଆମ ଗାଁ ଓ ତା'ର ପାଣି ପବନର ଦୁରାବସ୍ଥା, ସ୍ତ୍ରୀ-ବାଳ-ବୃଦ୍ଧଙ୍କ ଦୁଇଟି ପ୍ରଧାନ ଗୃହ ପରିଶ୍ରମ, ଧନ ମନ ତନର ଚିରଶତ୍ରୁ ନିଶାଦ୍ରବ୍ୟ ଓ ଗାନ୍ଧିଜୀଙ୍କ କଳ୍ପିତ ଆଦର୍ଶ ପଲ୍ଲୀଗ୍ରାମ ଆଦି ପନ୍ଦର ଖଣ୍ଡରୁ ଉର୍ଦ୍ଧ୍ୱ ପାଣ୍ଡୁଲିପି ପୁସ୍ତକ ଅପ୍ରକାଶିତ ହୋଇ ରହିଛି।

୧୯୩୦ ଖ୍ରୀଷ୍ଟାବ୍ଦରୁ ୧୯୭୦ ପର୍ଯ୍ୟନ୍ତ ପ୍ରାୟ ଚାରି ଦଶନ୍ଧିରୁ ଅଧିକ କାଳ ୰ ମିଶ୍ର ଅବିଭକ୍ତ କୋରାପୁଟ ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ବୁଲି ଗାନ୍ଧୀ ଆଦର୍ଶ ପ୍ରଚାର କଲେ। ଅନ୍ୟ ସ୍ୱାଧୀନତା ସଂଗ୍ରାମୀମାନେ କେବଳ ସ୍ୱରାଜ କଥା ପ୍ରଚାର କରୁଥିବା ବେଳେ ୰ ବ୍ରଜବନ୍ଧୁ ସ୍ୱାଧୀନତା ସହ ଦେଶ ଗଠନ, ଚରିତ୍ରବତ୍ତା, ସଂଗଠନ ସ୍ୱାବଲମ୍ବନ ଓ ସଂସ୍କାର - ସାହିତ୍ୟର ମଧ ପ୍ରଚାର, ପ୍ରସାରରେ ବ୍ରତୀଥିଲେ।

ଏହି ନବରଙ୍ଗପୁର ଅବସ୍ଥାନ କାଳରେ ସାହିତ୍ୟ ସୃଷ୍ଟିରେ ମନୋନିବେଶକରି ସାରସ୍ୱତ ଜଗତକୁ ବହୁ ପ୍ରବନ୍ଧ ପୁସ୍ତକ ଉପହାର ଦେଇଛନ୍ତି।

## ॥ ଝଡ଼ ଓ ଜୀବନ ॥

**ଶ୍ରୀ ଭାଗୀରଥି ପାତ୍ର**

**ବାପା ତାଙ୍କ ଜୀବନ କାଳରେ**
**ଖାଇ ପିନ୍ଧି ବଞ୍ଚିବା ପାଇଁ**
**କେବେ ତ ଯନ୍ତ୍ରଣା ଭୋଗୁ ନଥିଲେ ?**
**ବେଶ୍ ବଞ୍ଚୁଥିଲେ,**
**ପିଲା ଛବିଲାଙ୍କ ସୁଖ ଧ୍ୟେୟ ଥିଲା**
**ବହୁତ ପାଇଲେ। ପ୍ରତିଷ୍ଠା ଟିକିଏ ସମାଜରେ**
**ମାତ୍ର ଆଶା କରୁଥିଲେ।**
**ଏବେ ସବୁ ଆମେ......**
**ସତେ ବଞ୍ଚିବା ପାଇଁ ଖାଉ ନାହୁଁ**
**ଭୋଜନ ସକାଶେ ବଞ୍ଚୁ,**
**ଭେଜାଲ୍ ଖାଇ ବି ଅମର ହେବ ପାଞ୍ଚୁ।**
**ପ୍ରତିଷ୍ଠା ଆମର ତ ଭିନ୍ନ ଇଲାକାର**
**ଉଲଗ୍ନ ସଭ୍ୟତାର**
**ଗ୍ରାସ ଯେନ ତେନ ପ୍ରକାର**
**ମୁଖେ ପରନିନ୍ଦା ଆଉ ଆପଣା ପ୍ରଶଂସା,**
**ପରକୁ ଚାହିଁଲେ ତା'ର ସର୍ବସ୍ୱ ଲୁଣ୍ଠନ ଲାଳସା।**
**ନନା ଆଉ ଆମର ତଫାତ୍ - ସିଏ ମୁକ୍ତ ଜୀବ,**
**ଆମେ ନର୍କର କୀଟ, ଏକ ବଦ୍ଧ ପାଗଳ ଓ କ୍ଲିବ।**

● *ନବଜାଗରଣ ସାହିତ୍ୟ ସଂସଦ, ନବରଙ୍ଗପୁର - ୭୬୪ ०୫୯*

# କୋରାପୁଟର ସଭ୍ୟତା, ସଂସ୍କୃତି ଏବଂ ସାହିତ୍ୟ

ଶ୍ରୀ ତାରିଣୀ ଚରଣ ପାଣିଗ୍ରାହୀ

ପ୍ରତ୍ୟେକ ଦେଶ, ଜାତି ଓ ଅଞ୍ଚଳ ଜୀବନ ବ୍ୟାପାର ଅନ୍ତଃଚେତନ ଓ ସାମାଜିକ ବ୍ୟବସ୍ଥାକୁ ନେଇ, ତାହାର ସଭ୍ୟତା ଗଢ଼ି ଉଠିଥାଏ। କିନ୍ତୁ ସାହିତ୍ୟ, ଚାରୁକଳା, ଦର୍ଶନ ଏବଂ ଧର୍ମ ବିଶ୍ୱାସ ଉକ୍ତ ସମାଜର ସଂସ୍କୃତିର ଚେତନାକୁ ପ୍ରକାଶିତ କରିଥାଏ। ହୁଏ ତ ବହୁ ପୁରାତନ ସମାଜ ସଭ୍ୟତା ଶୀର୍ଷକୁ ଛୁଇଁ, ପତନର ସମ୍ମୁଖୀନ ହୋଇଛି, ଯାହା ମହାନ୍‌ଦେଶ ଭାରତର ସନାତନ ସଭ୍ୟତାର ପତନରୁ ପ୍ରମାଣିତ କୋରାପୁଟ ଜିଲ୍ଲା ଭାରତର ଗୋଟିଏ ଅନଗ୍ରସର, ଗରିବ ପଛୁଆ ଓ ଅପାଠୁଆ ଅଞ୍ଚଳ; କିନ୍ତୁ ଏହି ଅଞ୍ଚଳର ବିଗତ ସଭ୍ୟତାର ସ୍ମାରକୀ ରାମାୟଣ ଯୁଗ ପୂର୍ବରୁ ବହୁ ଚର୍ଚ୍ଚିତ ଓ ପ୍ରତିଷ୍ଠିତ।

ସାଧାରଣତଃ ମନଚେତନାର ପରିପ୍ରକାଶ ଭାଷା ସୂତ୍ରରେ ହିଁ ସାଧିତ ହୋଇଥାଏ। କଳ୍ପନା ଭାବନାକୁ ମନୋମୟ ପରିବେଶ ଦିଏ। କିନ୍ତୁ କାବ୍ୟ, ପ୍ରବନ୍ଧ, ନାଟକ, ଉପନ୍ୟାସ, ପୁରାଣ ଓ ଶାସ୍ତ୍ର ଭାଷାର ଶୈଳୀ, ପ୍ରକାଶନର ଚାତୁର୍ଯ୍ୟ ଏବଂ ବ୍ୟାକରଣ ଶୃଙ୍ଖଳା ଉପରେ ନିର୍ଭରଶୀଳ। ମନୋଭାବ ହୁଏ ତ ଲଳିତ, କଥିତ ଭାଷା କିମ୍ବା ଲିଖିତ ପଂକ୍ତି ଦ୍ୱାରା ପ୍ରକାଶିତ ହୁଏ, କିନ୍ତୁ ତାହା କାଳର କ୍ରମରେ ଭବିଷ୍ୟତ ସମାଜର ରୁଚି ଅନୁଯାୟୀ ପରିବର୍ତ୍ତନର ଧାରାରେ ପୁନଃ ପ୍ରତିଷ୍ଠିତ ହୋଇଥାଏ।

ସଂସ୍କୃତ ଭାଷାର ଅପଭ୍ରଂଶକୁ ଏଡ଼ାଇବା ପାଇଁ ପୁରାତନ କାଳରେ ଭାରତୀୟ ଶାସ୍ତ୍ର, ବେଦ, ଗଣିତ, ଜ୍ୟୋତି ବିଜ୍ଞାନ, ଦର୍ଶନ ଓ ପୁରାଣ ଶାସ୍ତ୍ର ଇତ୍ୟାଦି ଗୁରୁକୁଳ ଆଶ୍ରମରେ ଶ୍ରୁତି ଓ ସ୍ମୃତି ଦ୍ୱାରା ହିଁ ଶିକ୍ଷା ଦିଆ ଯାଉଥିଲା। କିନ୍ତୁ ମହର୍ଷି ବାଲ୍ମୀକି ପ୍ରଥମକରି ରାମାୟଣ କାହାଣୀକୁ ଅକ୍ଷର ମାଧ୍ୟମରେ ତାଳ ପତ୍ରରେ ଅଙ୍କନ କରିଥିଲେ - ତାହା ହିଁ ବିଶ୍ୱର ପ୍ରଥମ ଲିଖିତ ରଚନା ଭାରତ ଗୋଟିଏ ପ୍ରାଚୀନ ଦେଶ, ଏହି ବେଳାଭୂମିରେ ହିଁ ମାନବ ସଭ୍ୟତା ପ୍ରଥମେ ପ୍ରକାଶିତ ହୋଇଥିଲା - ଯାହା କାଳକ୍ରମେ ୟୁରୋପ ଓ ଏସିଆ ଭୂ-ଖଣ୍ଡକୁ ଅନୁପ୍ରବେଶ କରିଥିଲା।

ପ୍ରାୟ ତିନି ଶହ ବର୍ଷ ତଳେ ୟୁରୋପୀୟମାନଙ୍କ ଅନୁପ୍ରବେଶ ପରେ, ସେଠାକାର କେତେକ ସ୍ୱନାମଧନ୍ୟ ଐତିହାସିକ ଓ ଦାର୍ଶନିକ ସଂସ୍କୃତ ଭାଷା ଶିଖି ବେଦ, ଶାସ୍ତ୍ର ଓ ପୁରାଣ ନିଜ ଭାଷାରେ ଅନୁବାଦ କରିଥିଲେ। ବାଇବେଲ ପ୍ରଦର୍ଶିତ ମାନବ ସଭ୍ୟତାର କାଳକୁ ଲକ୍ଷ୍ୟରଖି, ଭାରତର ୧୨ ହଜାର ବର୍ଷ ତଳର ସନାତନ ସଭ୍ୟତା ଏବଂ ତାହାର ଲେଖା ଓ ଲେଖନୀକୁ ଖ୍ରୀ.ପୂ. ଦୁଇରୁ ତିନି ହଜାର ବର୍ଷ ମଧ୍ୟରେ ନିରୂପିତ କରିଅଛନ୍ତି। ପୁଣି ଆର୍ଯ୍ୟମାନେ ମଧ୍ୟ ପ୍ରାଚ୍ୟରୁ ଭାରତକୁ ଆସି, ଏଠାକାର ଦ୍ରାବିଡ଼ମାନଙ୍କୁ ଦକ୍ଷିଣ ଦିଗକୁ ଚଢ଼ି ଦେବା ପ୍ରସଙ୍ଗ ଚମତ୍କାର କପୋଳ କଳ୍ପିତ କରି ଭାରତୀୟ ଇତିହାସ ରଚନା କରିଛନ୍ତି; ଯଦିଓ ଭାରତର ଗଣିତ ଶାସ୍ତ୍ର, ଜ୍ୟୋତିର୍ବିଜ୍ଞାନ, ଦର୍ଶନ, ଧର୍ମ ବିଶ୍ୱାଶ, ମାନବ ବାଦୀ ସଭ୍ୟତା, ସଂସ୍କୃତ ଭାଷା, ସାମାଜିକ ବ୍ୟବସ୍ଥା ଏବଂ ସ୍ଥାପତ୍ୟକୁ ଅନୁଧାନ କରି ଭୂୟସୀ ପ୍ରଶଂସା କରି ଯାଇଛନ୍ତି।

କୋରାପୁଟ ଜିଲ୍ଲାର ଆଦିମ ସଂସ୍କୃତି, ସଭ୍ୟତା, ଜୀବନ ବ୍ୟାପାର ଓ କଥିତ ସାହିତ୍ୟ (ଯଥା ଲୋକ ଗୀତ - କିମ୍ବଦନ୍ତୀ ଓ ଲୋକନୃତ୍ୟ), ତତ୍‌କାଳୀନ ଭାରତୀୟ ସଭ୍ୟତା ଓ ସାହିତ୍ୟର ପରିମାପକୁ ଛାଡ଼ି ଚିନ୍ତା କରାଯାଇ ପାରେ ନାହିଁ। ତଥାପି ଏହି ଅଞ୍ଚଳର ସଂସ୍କୃତି ଭାରତୀୟ ଅନ୍ତଃଚେତନର ଉଦବୃତ୍ତ ସ୍ଥଳ କହିଲେ ଅତ୍ୟୁକ୍ତି ହେବ ନାହିଁ। ପ୍ରାଶନ ଲୋକମତ ଅନୁସାରେ କୋରାପୁଟ ଅଞ୍ଚଳ ଝାଡ଼ଖଣ୍ଡ, ଦଣ୍ଡକାରଣ୍ୟ ଶୀଳ ବଂଶଜଙ୍କ ରାଜ୍ୟ ଓ ଅନାର୍ଯ୍ୟ ଅଧିବାସୀଙ୍କ ବାସସ୍ଥଳ ରୂପେ ହିଁ ପରିଚିତ। ଯଦିଓ ରାମାୟଣ ରଚନାରେ, ମେଘଦୂତରେ, ବୌଦ୍ଧ ଓ ଜୈନ ପରମ୍ପରାରେ କିମ୍ବା ଶୈବ-ଶାକ୍ତ ଧର୍ମର ତନ୍ତ୍ର ଶାସ୍ତ୍ରରେ, ଏହି ଅଞ୍ଚଳର ପ୍ରାକୃତିକ ସମ୍ପଦ, ସଭ୍ୟତା, ଆଦିମ ସଂସ୍କୃତି ଏବଂ କଥିତ ସାହିତ୍ୟର ପରାକାଷ୍ଠାର ପ୍ରମାଣ ମିଳିଥାଏ।

କୋରାପୁଟ ଅଞ୍ଚଳର ବିଗତ ସମାଜର ସଭ୍ୟତାକୁ ଅନୁଧ୍ୟାନ କରିବା ପୂର୍ବରୁ ଏହି ଅଞ୍ଚଳର ବିଭିନ୍ନ ନଦନଦୀ, ପାହାଡ଼, ଗ୍ରାମ-ସହର, ସାଧନାପୀଠ, ଗିରିଗୁମ୍ଫା, ଶିଳା ଲିପି, ଧର୍ମ ବିଶ୍ୱାସ, ସାମାଜିକ ବ୍ୟବସ୍ଥା, ଶାସନ ପଦ୍ଧତି ଓ କଥିତ ସାହିତ୍ୟ ଗୀତି, ଗାଥା ଓ କିମ୍ବଦନ୍ତୀକୁ ଅନୁଶୀଳନ କରିବା ନିହାତି ଦରକାର ନିମ୍ନରେ ସେଥିରୁ କିଛି ନମୁନା ଦିଆଯାଇଚି :

(କ) ଆୟା - ମା', ବୁଆ-ବାପା, କନିଆ-କନ୍ୟା, ପରଜା-ପ୍ରଜା, ଗାଁର ମୁଖ୍ୟ ନାୟକ, ଗ୍ରାମରକ୍ଷି-ବାରିକ, ଚଲାଣ ଓ ପୂଜାରୀ ଇତ୍ୟାଦି।

(ଖ) ଦାରୁ-କାଠ, ଯୁଇ-ନିଆଁ, ସରାଳ -ପାଣି କୁଣ୍ଡ - ବନ୍ଧ, ଯୋଡ଼ି-ନାଳ ପୁଟ-ପୁର (ସହର), କୁଡ଼ିଆ - ଛୋଟ ଘର, ଖମାଣ-ଜଙ୍ଗଲ, ଡଙ୍ଗର-ପାହାଡ଼ ଇତ୍ୟାଦି।

(ଗ) ଧାଙ୍ଗଡ଼ା-ଧାଙ୍ଗଡ଼ୀ-ଯୁବକ ଯୁବତୀ, ଚଇତ ପରବ (ଚୈତ ପର୍ବ) ଦିଆଳି ପରବ (ଦୀପାବଳୀ), ପଞ୍ଚାୟତ, ମେଳନ (ସଭାସ୍ଥଳୀ) ଇତ୍ୟାଦି।

(ଘ) ଆଦିମ ଜାତି, ଯଥା, ପରଜା, କନ୍ଧ, ସୌରା, ଭତରା, ଭୂମିଆ, ପାଇକ, ହାଲବା, ରଣା, ମାଳି ଇତ୍ୟାଦି

ଏବଂ ଅଛୁଆଁ ଜାତି ଯଥା ଡମ୍ବ, ଚଣ୍ଡାଳ, ତନ୍ତୀ, ଘାସିଆ, ମେହିରି, କୁମ୍ଭାର, ଓ ହାଡ଼ି ଇତ୍ୟାଦି ।

(ଚ) ନଦନଦୀ ପାହାଡ଼ ଯଥା ଦେବ ମାଳି, ରାମଗଡ଼, ରାମଗିରି, ମାଣ୍ୟମକୋଣ୍ଡା । ନାକଟି ଡଙ୍ଗର, କୈଳାସ କୋଟା ପାହାଡ଼ ଇନ୍ଦ୍ରାବତୀ, କୋଲାବ, ସପ୍ତଧାରା, ଶବରୀ, ତମସା, ବଂଶଧାରା, ନାଗାବଳୀ ଇତ୍ୟାଦି ନଦୀ ।

(ଛ) ସାଧନାପୀଠ ଓ ମନ୍ଦିର ଯଥା ଗୁପ୍ତେଶ୍ୱର, ମାଉଳୀ, କାଳିମନ୍ଦିର, ଠାକୁରାଣୀ ଗୁଡ଼ି, ଈଶ୍ୱର ମନ୍ଦିର, ବନଦେବୀ, ଡଙ୍ଗର ଦେଇ, ଭଣ୍ଡାରଘରଥାଣି ବୌଦ୍ଧ ପୀଠ, ଜୈନପୀଠ, ଶିଳାଲିପି, ଗୁମ୍ଫା ଇତ୍ୟାଦି; ଯଦିଓ ଜିତୁମ୍ ହାଲବାଇ ଓ ମହାପ୍ରଭୁ ସ୍ରଷ୍ଟା ବା ବିଷ୍ଣୁଙ୍କ ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ ଅଟେ ।

ଉପରୋକ୍ତ ତଥ୍ୟରୁ ଅବଗତ ହୁଏ, ଏହି ଜିଲ୍ଲାର ଆଦିବାସୀ ଅଧୁଷିତ ମାନବ ସମାଜ, ବୈଦିକ ସଭ୍ୟତାର ପରିପୂରକ ହିଁ ଥିଲା - ତାହା ସଂସ୍କୃତ ଭାଷ୍ୟ ତଥା ଆର୍ଯ୍ୟ ପରମ୍ପରା ସହିତ ଓତଃପ୍ରୋତଭାବେ ଜଡ଼ିତ ଥିଲା । ସାମାଜିକ ବ୍ୟବସ୍ଥା ଭିତରେ ଗାଁ ପଞ୍ଚାୟତ, ଗାଁ ମେଳଣ (ସଭାସ୍ଥଳ) ଗାଁ ନାୟକ, ବାରିକ, ଚଲାଣ ଓ ପୂଜାରୀ ନିମ୍ନ ସ୍ତରରେ ଶାସନ ଓ ଶୃଙ୍ଖଳାର ଡୋରି ଧରି ରଖିଥିଲେ । ବ୍ୟକ୍ତି ଓ କୁଟୁମ୍ବର ସମ୍ପର୍କ ହିନ୍ଦୁ ମତାଦର୍ଶର ପଦ୍ଧତି ଉପରେ ନିର୍ଭର କରୁଥିଲା ବିବାହ, ଛାଡ଼ପତ୍ର, ପୋଷ୍ୟପୁତ୍ର ଗ୍ରହଣ ଓ ଉତ୍ତରାଧିକାରୀ ପଦ୍ଧତି ନିର୍ଣ୍ଣାୟକ ଥିଲା ସେମାନଙ୍କଠାରେ ବିଧବା ବିବାହ, ସ୍ୱେଚ୍ଛାକୃତ ବା ପ୍ରେମ ବିବାହ, ଉଦୁଲିଆ ଅନ୍ୟର ସ୍ତ୍ରୀ ଗ୍ରହଣ କରିବା, କନ୍ୟାସୁନା ଇତ୍ୟାଦି ପ୍ରଥା ପ୍ରଚଳିତ ଥିଲା ।

ପ୍ରତ୍ୟେକ ଜାତି ପାଇଁ ସ୍ୱକୀୟ ନିୟମ ସୁରକ୍ଷା ପାଇଁ କୁନ୍ଦନାୟକ ଭାତନାୟକର ପ୍ରଥା, ଜନ୍ମ ଓ ମରଣର ଶୌଚ ବ୍ୟବସ୍ଥା, ସାଧାରଣଙ୍କ ସୁବିଧା ପାଇଁ ଗାଁ ମଶାଣି, ଗାଁ ଠାକୁରାଣୀ, ଯାତ୍ରା ପଡ଼ିଆ, ଗୋଚର ଇତ୍ୟାଦି ସୁପରିକଳ୍ପିତ ବ୍ୟବସ୍ଥା ଥିଲା । ଚଇତ ପରବ ''ଚୈତ୍ରପର୍ବ ଓ ଦିଆଲି ପର୍ବ ''ଦୀପାବଳୀ'' ସେମାନଙ୍କର ବଡ଼ ପର୍ବ ଅଟେ । ହିନ୍ଦୁ ବା ବୈଦିକ ସମାଜ ବ୍ୟବସ୍ଥାର ପ୍ରତିଛାୟା, ସେମାନଙ୍କ ଦୈନନ୍ଦିନ ଜୀବନରେ ବର୍ତ୍ତମାନ ସୁଦ୍ଧା ଦେଖିବାକୁ ମିଳେ ।

ସେମାନଙ୍କ ସାହିତ୍ୟ ଯାହା କଥିତ ଅର୍ଥାତ କବିତା, ଢଗଢ଼ମାଳୀ ଓ ଗପ ମାଧ୍ୟମରେ ପ୍ରଚଳିତ - ତାହା ପରିବେଶ, ଜୀବନ ବ୍ୟବସ୍ଥା, ସମସାମୟିକ ରୀତିନୀତି ଏବଂ ପ୍ରେମ ଜନିତ ବିରହ ମିଳନର ବିଷୟ ବସ୍ତୁ ଉପରେ ଆଧାରିତ । ଚଇତ ପରବର ଗୀତ ଢ଼ଗଢ଼ମାଳି ଅନୁଧ୍ୟାନ କଲେ - ଏହାର ତାତ୍ପର୍ଯ୍ୟ ବୁଝି ହୁଏ । କିନ୍ତୁ ପରବର୍ତ୍ତୀ କାଳରେ ଜୟପୁର ରାଜସଭାର ସଦସ୍ୟମାନଙ୍କ ରଚନା ୪ ବିଶ୍ୱମ୍ଭରନନ୍ଦ ବିକ୍ରମ ଦେବ ଗ୍ରନ୍ଥାବଳୀ ଇତ୍ୟାଦି ଲେଖା ପ୍ରାଣିଧାନ୍ୟ ଯୋଗ୍ୟ ।

ସ୍ୱାଧୀନତା ପରବର୍ତ୍ତୀ କାଳର ଗପ, କବିତା, ଉପନ୍ୟାସ ନାଟକ ଓ ଇତିହାସର ଲେଖା ଲେଖନୀ ଓଡ଼ିଆ ସାହିତ୍ୟକୁ ଯଥେଷ୍ଟ ଦାନ ଦେଇଛି । ଜୟପୁରର ଆକାଶବାଣୀ କେନ୍ଦ୍ରରେ ଆଦିବାସୀ ସଂଗୀତ ଲୋକଗୀତ ଓ ଢ଼ଗଢ଼ମାଳୀକୁ ବହୁ ପ୍ରୋତ୍ସାହନ ଦିଆଯାଉଛି । ତଥାପି ଏହି ଅଞ୍ଚଳର ସଭ୍ୟତା, ସାହିତ୍ୟ, ସ୍ଥାପତ୍ୟ ଓ ସଂସ୍କୃତି ସଂପର୍କରେ ଉଚ୍ଚତର ଗବେଷଣା ହେଲେ ଆଦିମ ସଭ୍ୟତାର ଚାଞ୍ଚଲ୍ୟକର ତଥ୍ୟ ଲୋକ ଲୋଚନକୁ ଆସିପାରିବ । ଯେହେତୁ କୋରାପୁଟ ଅନ୍ତଃଚେତନ ଯାହା ପ୍ରକୃତି ପରିବେଶକୁ ଆଧାରକରି ବିଗତ ବହୁ ହଜାର ବର୍ଷ ତଳୁ ଗଢ଼ି ଉଠିଛି ।

କୋରାପୁଟ ଜିଲ୍ଲା ଆର୍ଯ୍ୟ, ଦ୍ରାବିଡ଼ ଓ ଆଦିମ ସଭ୍ୟତାର ମିଳନ କେନ୍ଦ୍ର ରୂପେ ପରିଚିତ ହେଲେ ବି, ଏହାର ସଂସ୍କୃତି ଆଦି ମାନବର ପରମ୍ପରା ଉପରେ ପ୍ରତିଷ୍ଠିତ - ଏହି ବନାନୀ ବେଳା ଭୂମୀରେ କେତେ ରାଜ୍ୟ - ସାମ୍ରାଜ୍ୟ ଗଢ଼ି ଉଠି ପତନ ହୋଇଛି; କେତେ ଧର୍ମ ବିଶ୍ୱାସର ପରିବର୍ତ୍ତନ ଘଟିଛି ଏବଂ କେତେ ଆକ୍ରମଣର ସମ୍ମୁଖୀନ ହୋଇଛି - ତାହା ନନ୍ଦପୁର ରାଜ୍ୟ, ବାଲିମେଳା ରାଜ୍ୟ ମାଲ୍ୟବନ୍ତ ଗିରି ରାଜ୍ୟ, ଶିଳାବଂଶ ରାଜୁତି ଇତ୍ୟାଦିର ତଥ୍ୟର ଅନୁସନ୍ଧାନରେ ହିଁ ପ୍ରକାଶିତ ହୋଇ ପାରିବ ।

ଲର୍ଡ଼ ମେକାଲଙ୍କ ଉଦ୍ୟମର ଇଂରାଜୀ ଶାସନ ଅମଳରେ ଯେଉଁ ଶିକ୍ଷାପଦ୍ଧତି ଭାରତରେ ପ୍ରଚଳନ କରା ହେଲା, ବିଗତ ୨୦୦ ବର୍ଷ ମଧ୍ୟରେ ତାହା ଭାରତୀୟ ଚେତନା ଓ ଜୀବନଧାରାକୁ ସନାତନ ଧର୍ମ ଓ ମାନବିକ ଦର୍ଶନରୁ ଓହରାଇ ଜଡ଼ ସଭ୍ୟତା ଓ ବୈଷୟିକ ଚେତନା ମଧ୍ୟକୁ ଟାଣି ନେଇଛି - ତାହାର ପ୍ରଭାବ କୋରାପୁଟ ଜିଲ୍ଲା ଉପରେ ବି ପଡ଼ିଛି । ଯାହା ଫଳରେ ଏହି ଅଞ୍ଚଳର ଆଦିମ ସଂସ୍କୃତି ପ୍ରକୃତିମୟ ଜୀବନ ଧାରା ଓ ଅନାବିଳ ଚେତନା ପ୍ରତିହତ ହୋଇ ପଡ଼ିଛି ।

ବର୍ତ୍ତମାନ କେତେକ ଜ୍ଞାନୀ-ପଣ୍ଡିତ, ପ୍ରତିଷ୍ଠିତ ଜିଲ୍ଲାବାସୀ ଗବେଷକ ଏବଂ ଉଚ୍ଚାଭିଳାଷି ଏ ଦିଗରେ ବିଶେଷ କିଛି ଉଦ୍ୟମ ଚଳାଇଛନ୍ତି - ସେମାନେ ହିଁ ଏହି ଅଞ୍ଚଳର ଆଦିମ ସଂସ୍କୃତିର ବିଭିନ୍ନ ଦିଗନ୍ତର ଉନ୍ମୋଚନ କରିବାରେ ସକ୍ଷମ ହୋଇ ପାରିବେ । ତଥାପି ବିଦ୍ୟାଧର ସିଂଙ୍କ ନନ୍ଦପୁର ଇତିହାସ, ବେଲ୍‌ସ କୋରାପୁଟ ଗେଜେଟିଏର ଏବଂ ମାନ୍ଦ୍ରାସ ଗେଜେଟିଏରରେ ପୁରାତନ ପାତ୍ରଳଙ୍କ ଗବେଷଣା ରତ ତଥ୍ୟର ସାହାଯ୍ୟ ନେବା ନିତ୍ୟାନ୍ତ ଦରକାର, ଯାହା ବିଶେଷ ତଥ୍ୟ ପୂର୍ଣ୍ଣ କୋରାପୁଟ ଜିଲ୍ଲାରେ ତନ୍ତ୍ର, ଆୟୁର୍ବେଦ, ଜ୍ୟୋତିର୍ବିଜ୍ଞାନ, ଯୋଗଶାସ୍ତ୍ର ଏବଂ ସୃଷ୍ଟି ତତ୍ତ୍ୱ ନେଇ ବହୁ ତାଳପତ୍ର ପୋଥି ଗୁଣୁପୁର, ଜୟପୁର, ମାଲକାନଗିରି, ନବରଙ୍ଗପୁର ଏବଂ ଜିଲ୍ଲାର ଆଭ୍ୟନ୍ତରିଣ ଅଞ୍ଚଳର ବ୍ୟକ୍ତି ବିଶେଷଙ୍କଠାରେ ରହିଛି । ସେମାନଙ୍କୁ ଉଚିତ ମୂଲ୍ୟ ଦେଇ ତାହା ସଂଗ୍ରହ କରି, ଗୋଟିଏ ନିର୍ଦ୍ଦିଷ୍ଟ ସଂଗ୍ରହାଳୟରେ ରଖିବା ଦରକାର, ତାହା ଏହି ଅଞ୍ଚଳରେ ବିଗତ ସଂସ୍କୃତି ଉପରେ ବିଶେଷ ଆଲୋକପାତ କରିବ । ସଙ୍ଗେ ସଙ୍ଗେ ଭବିଷ୍ୟତର ଗବେଷକମାନଙ୍କ ପକ୍ଷରେ ବିଶେଷ ଉପାଦେୟ ହେବ ।

● ଅଧକ୍ଷ, ଆଇନ ମହାବିଦ୍ୟାଳୟ, ଜୟପୁର ।

# ଝଟତ୍ କବି ମାଗତୁ ପଣ୍ଡା

**ଗଦାଧର ଦାସ**

"ଜୟପୁରର ଯେ କୌଣସି ସ୍ଥାନୀୟ ବୃଦ୍ଧ ବ୍ୟକ୍ତିଙ୍କୁ ପଚାରିବ ଆଜ୍ଞା, ମାଗତୁ ପଣ୍ଡାଙ୍କୁ ଜାଣନ୍ତି ? ତା'ହେଲେ ଉତ୍ତର ପାଇବ; ମାଗତୁ, କେଉଁ ମାଗତୁ ? "ମାଗତୁ, କଥା କହିବାକୁ ଆଗତୁ।" ସେହି ମାଗତୁ ନା ?

ଭାରତୀୟ ପୁରାଣ ମାନଙ୍କରେ ବର୍ଣ୍ଣନା ହୋଇଛି ନାରଦଙ୍କ ଗୁଣ। ବିଶିଷ୍ଟ ଗୁଣ ହେଲା ସତ କହିବେ। ଏଥିରେ ସୃଷ୍ଟି ହେବ କଳି। ତଥାପି ପ୍ରତ୍ୟେକଙ୍କ ନିକଟରେ ଏହି ଋଷି ପ୍ରିୟପାତ୍ର। ଠିକ୍ ସେହିପରି ଏହି ମାଗତୁ ପଣ୍ଡା ସାଧାରଣ ପ୍ରଜାଙ୍କଠାରୁ ରାଜାଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ସମାଲୋଚନ କରିବେ। ତାହା ପୁଣି ପଦ୍ୟ ଆକାରରେ। ତଥାପି ତାଙ୍କୁ କେହି ରାଗନ୍ତି ନାହିଁ। ବରଂ ଶୁଣିବାକୁ ଭଲ ପାଆନ୍ତି। ଆଦର ସହକାରେ ଡାକି ପାଖରେ ବସାନ୍ତି। ଭଲ ପାଆନ୍ତି ତାଙ୍କ ମୁଖରୁ ଭଲରେ ହେଉ ବା ମନ୍ଦରେ ହେଉ, ଦି'ପଦ ଶୁଣିବାକୁ। ତାହାରି ଏକ ଉଦାହରଣ ହେଉଛି ସେ ପୂଜାରୀ। କୁଞ୍ଜ ବିହାରୀ ମନ୍ଦିର ପୂଜା କରିବା ଏକ ମାତ୍ର ଜୀବିକା।

ଏ ଝଟତ୍ କବିଙ୍କ ଜନ୍ମସ୍ଥାନ ଗଞ୍ଜାମ ଜିଲ୍ଲା। ଖେମଣ୍ଡି ମଣ୍ଡଳର ଗୁମା ଗ୍ରାମରେ। ବାପାଙ୍କ ନାମ କୃଷ୍ଣ ଚନ୍ଦ୍ର ପଣ୍ଡା। ବୈଷ୍ଣବ ପଣ୍ଡା ଏବଂ କୃଷ୍ଣ ଚନ୍ଦ୍ର ପଣ୍ଡା ଦୁଇଭାଇ। ଦୁଇ ଭାଇଙ୍କର ଗୃହ କଳିରୁ ସାନଭାଇ ସମସ୍ତ ସ୍ଥାବର ଆସ୍ଥାବର ସମ୍ପତ୍ତି ତ୍ୟାଗକରି ତିନିପୁଅ ଓ ତିନିଝିଅ, ସ୍ତ୍ରୀ ସହ ଜୟପୁର ସା ୧୯୧୮ ଇରେରେ ଚାଲି ଆସିଲେ। ଏହି ସମୟରେ ଜୟପୁରର ସ୍ୱନାମଧନ୍ୟ ଶାସକ ଥିଲେ। ସାର୍ ବିକ୍ରମ ଦେବ K.C.I.E ଏହି ରାଜାଙ୍କର ଉଦାର ଚରିତ୍ର। ପ୍ରଜା ବାତ୍ସଲ୍ୟ, ଦାନାଦି ନାନାବିଧି ସଦ୍‌ଗୁଣଗୁଡ଼ିକ ପଡ଼ୋଶୀ ରାଜ୍ୟରେ ପ୍ରଚାରିତ ହେବା ସହ ପଡ଼ୋଶୀ ରାଜ୍ୟବାସୀଙ୍କୁ ଆକର୍ଷିତ କରିଥିଲା। ତେଣୁ କୃଷ୍ଣ ଚନ୍ଦ୍ର ପଣ୍ଡା ତାଙ୍କ ସନ୍ତାନ ସନ୍ତତି ସହ ଜୟପୁର ଚାଲି ଆସିଲେ। ରାଜା ମାଗତୁ ପଣ୍ଡାଙ୍କୁ କୁଞ୍ଜ ବିହାରୀ ମନ୍ଦିରର ପୂଜକ ରୂପେ ନିଯୁକ୍ତି କରିଥିଲେ।

ଏଇ ପରିପ୍ରେକ୍ଷିରେ ବିଶାଳ ନନ୍ଦପୁର ରାଜ୍ୟର ରାଜଧାନୀ ଜୟପୁର ସହରରେ ବା ଅଭାବ ଅସୁବିଧା କେଉଁଠି ? ତତ୍‌କାଳୀନ ମହାରାଜା ରାମ ଚନ୍ଦ୍ର ଦେବ ପ୍ରଜାବତ୍ସଳ ସାହିତ୍ୟାନୁରାଗୀ, ଦାନୀ। ଏ ସାହିତ୍ୟ, ଲୋକ ସାହିତ୍ୟ। ଏହାର କବି 'ଝଟତ କବି'। ଏମାନଙ୍କୁ କୁହାଯାଏ ଗୀତ କୁଡ଼ିଆ। ଏଇ ପରିବେଶ ମାଗତୁଙ୍କୁ ହସରସପ୍ରିୟ ଝଟତ୍ କବି କରିବାରେ ସାହାଯ୍ୟ କରିଥିଲା। ସେ ଗୀତ କୁଡ଼ିଆ ମଧ ଥିଲେ। ଅବଶ୍ୟ ତାଙ୍କ କବିତାଗୁଡ଼ିକ ଲିପିବଦ୍ଧ ହୋଇ ପାରିଲା ନାହିଁ। ଯାହାକି ଏଇ ରାଜ୍ୟର ଦୁର୍ଭାଗ୍ୟ ବୋଲି କୁହାଯିବ। କେବଳ ରହିଛି ନାଉ୍ କିଂଚିତ ଲୋକ ମୁଖରେ।

ସେ ଥିଲେ ନିର୍ଭୀକ। ସା ୧୯୩୦ଇରେ ଜୟପୁର ରାଜା ରାମଚନ୍ଦ୍ର ଦେବ ଲକ୍ଷ୍ମଣ ପୁର ବା ଲକ୍ଷ୍ନୌରେ ଦେହ ତ୍ୟାଗ କଲେ। ସେ ନିଃସନ୍ତାନ ଥିବାରୁ ତାଙ୍କ ବଂଶଧର ସାହିତ୍ୟ ସମ୍ରାଟ ବିକ୍ରମଦେବ ବର୍ମା ଜୟପୁରର ରାଜା ହେଲେ। ଏହାଙ୍କ ରାଜତ୍ୱ ସମୟରେ ଦେବାଳୟମାନଙ୍କର କିଛି କିଛି ପୂଜା ଭୋଗ କମେଇ ଦିଆଗଲା। ମାଗତୁ ଏଥିରେ ବିବ୍ରତ ହୋଇ ରାଜାଙ୍କ ସମ୍ମୁଖରେ ଗୀତ ଆକାରରେ ଗାଇଥିଲେ –

**"ଯେ ଦିନ ଆସିଲେ ବୁଦ୍ଧେ**
**ଦେବତାଙ୍କ ପଦ୍ଧି କାଟିଲେ ଅଦ୍ଧେ,**
**ରେ ନୂଆ ନିଆଳି। କେହି ନ କହିଲେ ପଦେ ହେ।**
**ନ ପାଇ ମେରିଆ ମେଣ୍ଢା,**
**ଦେବା ଦେବୀଙ୍କର ଶୁଖିଲା ହଣ୍ଡା**
**ରେ ନୂଆ ନିଆଳି, ଫାଳେ ନଢ଼ିଆରେ ଥଣ୍ଡା ହେ।"**

ଏହି ସମୟରେ ମନୋରଂଜନ ଥିଲା ନୃତ୍ୟ ଓ ଗୀତ। ଏହି କଳା ମଧ ତାଙ୍କଠାରେ ସ୍ଥାନ ପାଇଥିଲା। ଗୀତ ବୋଲୁଥିଲେ। ହାରମୋନିୟମ୍ ମଧ ବଜାଇ ପାରୁଥିଲେ ଜୟପୁରରେ ରାଜା ବିକ୍ରମ ଦେବ ବର୍ମାଙ୍କ ସମୟରେ ରାଧାପ୍ରେମଲୀଳା ନୃତ୍ୟ ଶିକ୍ଷା ହେଲା। ଏଥିରେ ସେ କାଟରା ବେଶରେ ଅବତୀର୍ଣ୍ଣ ହୋଇ ଗାଇଥିଲେ –

**"ରଖ ରଖ ରସିକାରେ, ନବ ଘନ କୁନ୍ତଳା",**

ଏହାର ଗୁରୁଥିଲେ ରାମନାଥ ସୁଆର, ସୁନାରୀ ସାହି, ଜୟପୁର।

ଏହି ସମୟରେ ଜୟପୁର ଧୋବା ସାହିରେ ଭିକାରୀ ଗୁରୁ (ଭିକାରୀ ଦାସ ପୁରୋହିତ) ଶିଖାଇଲେ ବୀରବାହୁ ନାଟକ। ନାଟକ ପରିବେଷଣ ହେଲା। ଗୁରୁଙ୍କୁ ରୌପ୍ୟ ପଦକ ମିଳିଲା। ନାଟକର ଅପକର୍ଷତା ହୃଦୟଙ୍ଗମ କରି ସେ ଗାଇଥିଲେ –

**"ରଜତ ତାଦକ ମିଳି ଯିବାରୁ,**
**ତଳକୁ ନ ଚାହେଁ ରଜକ ଗୁରୁ।**
**ଯେ ଦିନ ପଡ଼ିବ ଧୋବାହୁ ରାଡ଼ି**
**ଗୁରୁ ପଳାଇବେ ଆସନ ଛାଡ଼ି।"**

ସେହିପରି ନୃତ୍ୟର ତାଳ ଭୁଲ ହବାର ଦେଖି ସେ ଗାଇଥିଲେ -

**"କି ହେଲାରେ କାଳ,**
**ଦେଖି ପରାଏ ପଡୁଥିଲା ତାଳ।"**
**ପଙ୍କାତ, ଏକି ଆଚମ୍ବିତ, ଦିନ ବେଳେ ଗଣୁଥିଲା ନକ୍ଷତ୍ର।"**

ଶ୍ରୀ ପଣ୍ଡା ଗୀତ ମାଧ୍ୟମରେ ରାଜାଙ୍କୁ ସମାଲୋଚନା କରି ମଧ୍ୟ, ରାଜାଙ୍କର ପ୍ରିୟପାତ୍ର ହୋଇ ପାରିଥିଲେ ।

ସାହିତ୍ୟ ସମ୍ରାଟ ବିକ୍ରମ ଦେବ ବର୍ମା, "ଉଜ୍ଜ୍ୱଳ କୁଞ୍ଜମାଳା" ନାଟକ ରଚନା କଲେ । ଏହି ନାଟକ ଲାଲ ଘରେ ଶିକ୍ଷା କରାଗଲା । ଏଠାରେ ପ୍ରଥମେ ଘୋଷ ଦେଇଥିବା ବ୍ୟକ୍ତିମାନେ ପରବର୍ତ୍ତୀକାଳରେ ଜଣେ ଜଣେ କଳାକାର ହୋଇ ପାରିଥିଲେ । ଯଥା ଶେଖର ଦଳପତି, ଏହି ନାଟକରେ ରାମ ଭୂମିକାରେ ମାଗତୁ, ସୀତା ଭୂମିକାରେ ଇଦ୍ରିସ, ଲବ ଭୂମିକାରେ ରଘୁନାଥ ପଟ୍ଟନାୟକ (ଏମ୍.ଏଲ୍.ଏ ଓ ଏକ୍ସ ମିନିଷ୍ଟର) ଓ କୃଷ୍ଣ ଭୂମିକାରେ ଲକ୍ଷ୍ମୀକାନ୍ତ ପଣ୍ଡା ଅବତୀର୍ଣ୍ଣ ହୋଇଥିଲେ । ଅଳ୍ପଦିନ ଖେଳ ପରେ ମେଳ ଭାଙ୍ଗିଯିବାରୁ ଦୁଃଖରେ ସେ ଗୀତ ଲେଖିଥିଲେ,—

ପଠାଣ ସୀତାକୁ ବ୍ରାହ୍ମଣ ରାମ,
ଦୁଇ ଜଣ ମିଶି କରୁଥିଲେ କାମ
ଲାଲ ପିଲା ଆସି ଭାଙ୍ଗିଦେଲା ମେଳ,
ଦୁଇ ଚାରିଦିନ ହୋଇଥିଲା ଖେଳ
ଆଉ କି କରିବୁ କୁନ୍ଦମାଳ,

କୁଞ୍ଜ ବିହାରୀ ମନ୍ଦିରର, ବର୍ତ୍ତମାନ ଥିବା ଝିଙ୍କର ଛପର ବଖରା, ଯେଉଁଠାରେ କି କୃତ୍ରିମ ପ୍ରଜନନ କେନ୍ଦ୍ର ଚାଲୁ ଅଛି, ତୟାର ଚାଲିଥାଏ । ମାଗତୁଙ୍କୁ ରାଜ ବାଟିରେ ରାଜା ବିକ୍ରମ ଦେବ ବର୍ମା ମନ୍ଦିର କାମ କିପରି ଚାଲିଛି ପଚାରିବାରୁ ମାଗତୁ ଗୀତରେ ଉତ୍ତର ଦେଲେ,—

"ବନ୍ଧୁର ଉପରେ ବନ୍ଧୁ,
ଜଣେ ବୋଲୁଥିଲା ଇଲାଗା ଲେଦୁ ।
ଜଣେ ବୋଲୁଥିଲା ଉନି,
ନନ୍ଦବାବୁ ଆସି କିସ କହିଦେଲେ
ସବୁ ହୋଇଗଲେ ତୁନି ।"

ପ୍ରଥମ ସାଧାରଣ ନିର୍ବାଚନରେ ସେ ଭୋଟ ଦେବାକୁ ଭୋଟ କେନ୍ଦ୍ରକୁ ଯାଇ ଦେଖନ୍ତି ତ, ଭୋଟର ଲିଷ୍ଟରେ ତାଙ୍କର ନାମ ନାହିଁ । ତେଣୁ ସେ ପ୍ରିସାଇଡ଼ିଂ ଅଫିସରଙ୍କୁ କହିଲେ,

"ଏଣେ ଛୋଟାକୁ ତେଣେ କଣା,
ନାଁ ଖୋଜିଖୋଜି ହେଲି ବଣା"

ସ୍ୱାଧୀନ ସଂଗ୍ରାମ ଚାଲିଥାଏ । ଦ୍ୱିତୀୟ ବିଶ୍ୱଯୁଦ୍ଧ ଯୋଗୁଁ ବଜାର ଦର ହୁ', ହୁ ହୋଇ ବଢୁଥାଏ । ଏଥିରେ ଅତିଷ୍ଠ ହୋଇ ସେ ଗାଇଥିଲେ,—

"ଲୁଙ୍ଗି ହୋଇଗଲା ଶିରି କପଡ଼ା,
ହୋଟେଲ ଭାତ ହେଲା ଅଭଡ଼ା
ଦୁଇ ଅଣା ହେଲା ଗୋଟିଏ ଖଡ଼ା,
ଚାରି ଅଣା ହେଲା କାଠ ଦି'ବିଡ଼ା ।"
ତି ପାଠ ପଢ଼ା ହାତରୁ ଛଡ଼ା,
ଦିହୁଡ଼ି ଲଗାଇ ପତାକା ଉଡ଼ା
ଆହୁରି ବୋଲୁଛି ସ୍ୱରାଜ ଲୋଡ଼ା ।

ସେହି ପରି ଦିନେ କତୁଆଳ ଘରକୁ ଯାଇ ଘରକୁ ଦେଖି କହିଲେ, "ବାପା କତୁଆଳ ପୁଅ ଚିହ୍ନିନି, ଅଧା ତାଳକୁ ଅଧାଟିଣି ବର୍ତ୍ତମାନର ଜୟପୁର ବିଧାନସଭା ସଭ୍ୟ ଏବଂ ଭୂତପୂର୍ବ ଅର୍ଥମନ୍ତ୍ରୀ ଶ୍ରୀଯୁକ୍ତ ରଘୁନାଥ ପଟ୍ଟନାୟକ ସ୍ୱର୍ଗତ ମାଗତୁ ପଣ୍ଡାଙ୍କ ବିଷୟରେ ଯେତିକି ଜାଣନ୍ତି, ବୋଧହୁଏ ଆଉ କେହି ସେତିକି ଜାଣନ୍ତି ନାହିଁ । କାରଣ ସେ ଥିଲେ ମାଗତୁଙ୍କର ପ୍ରତିବେଶୀ ଅତିନିକଟତର । ଆଜି ଯଦି ମାଗତୁ ବଞ୍ଚିଥାନ୍ତେ, ସେ ନିଶ୍ଚିତ ଭାବେ ରଘୁବାବୁଙ୍କୁ ଲକ୍ଷ୍ୟକରି ଗାଇଥାନ୍ତେ—

"ରଘୁ ପଟ୍ଟନାୟକ ଥିଲେ ନାଟୁଆ,
ଅଚି ପ୍ରିୟ ତାଙ୍କ ଦାସ କାଠିଆ
ମାଦଳା ସାହିରେ ବଢ଼ ପାଠୁଆ
ଭୋଟ ହାଟେ ବୁଲି ହେଲେ ହାଟୁଆ
କଂଗ୍ରେସର ଏଠି ଖାଣ୍ଟି ବେଠିଆ
ମନ୍ତ୍ରୀ ଦଳପତି ହୋଇ ପାରିଲେ ନି ମୂଳ ପାଟିଆ
ଯେଣୁ ନୋହିଲେ ସେ ନଟକୁଟିଆ ।

ସ୍ୱର୍ଗତ ମାଗତୁ ପଣ୍ଡା ଜୟପୁର ରାଜ ଦରବାରର ଯଦୁମଣି ଥିଲେ ବୋଲି ଉପରୋକ୍ତ ଘଟଣାବଳିରୁ ପ୍ରମାଣିତ ହୁଏ ।

ଉଲ୍ଲେଖ ଯୋଗ୍ୟ ଯେ, କବିଙ୍କର "ମାଗୁତୁ" ନାମଟି ସର୍ବଜନାଦୃତ ଶ୍ରଦ୍ଧାନାମ । ତାଙ୍କର ଅସଲ ନାମ ଚୌଧୁରୀ ମଦନ ମୋହନ ପଣ୍ଡା । ଜୟପୁର ମହାରାଜା ରାମଚନ୍ଦ୍ର ଦେବଙ୍କ ଠାରୁ ସେ "ଚୌଧୁରୀ" ଉପାଧି ପ୍ରାପ୍ତ ।

ଏ ବିଷୟରେ ତାଙ୍କ ସମସାମୟିକ ଲୋକ କହନ୍ତି, "ରଘୁନାଥ ମନ୍ଦିର ସାମନାରେ ବହୁଦିନ ଧରି ରାମଲୀଳା ନାଟ ହୁଏ । ଏହି ନାଟରେ ବାଦ୍ୟଯନ୍ତ୍ର ଥିଲା କେବଳ ତାଳ ଓ ମୃଦଙ୍ଗ । କାଳିଆ ପୂଜାରୀ ଥିଲେ ଷ୍ଟେଜ୍ ମେନେଜର । ଅଗାଧୁ ପରିଚ୍ଛା ଥିଲେ ଦେବସ୍ଥାନ ପରିଚ୍ଛା । ରାମଲୀଳା ନାଟ ଶେଷରେ ରାଜା କାଳିଆ ପୂଜାରୀଙ୍କୁ କଙ୍କଣ ଓ ଅଗାଧୁଙ୍କୁ କୁଣ୍ଡଳ ପ୍ରଦାନ କଲେ ।"

ଏଥିରେ ଦୁଃଖିତ ହୋଇ ରାଜାଙ୍କୁ ଚେତାଇଦେବା ଲାଗି, ଛିଣ୍ଡାଲୁଗା ପିନ୍ଧି ରାଜାଙ୍କ ପାଖକୁ ଯାଇ ମାଗତୁ ଗୀତ ଆକାରରେ କହିଲେ,

ରଢ଼ି ରଢ଼ି ମଲେ ପାଳିଆ,
କଙ୍କଣ ପାଇଲା କାଳିଆ
ଅଗାଧୁ ପାଇଲା କୁଣ୍ଡଳ
ବାକି ସମସ୍ତଙ୍କୁ ଛଟିଆ ବାଳ ।

ଗୁଣଗ୍ରାହୀ ରାଜା, ସାମାନ୍ୟ ବିମୁଖ ହେଲେ ନାହିଁ । ବରଂ ପରଦିନ ମାଗତୁଙ୍କୁ ଡାକି କଙ୍କଣ, କୁଣ୍ଡଳ ସହ 'ଚୌଧୁରୀ' ଉପାଧିରେ ଭୂଷିତ କଲେ ।

ଏହା ଦେଖି ଲୋକେ କହିଲେ—
"ମାଗତୁ, କଥା କହିବାକୁ ଆଗତୁ" ।

ବିନୟ ଭାବରେ ମନ୍ତବ୍ୟ ଦିଏ ଯେ, ଏପରି ଏକ ଅବିସ୍ମରଣୀୟ ପ୍ରତିଭା, ଆଶୁ କବି ମାଗତୁଙ୍କୁ ନେଇ ଏ ଅଞ୍ଚଳ ଗର୍ବ ଅନୁଭବ କରିବା ସ୍ୱାଭାବିକ ।

# ନନ୍ଦପୁର ଇତିକଥା

କୃଷ୍ଣଚନ୍ଦ୍ର ନିଶଙ୍କ

**କୌ**ଣସି ସ୍ଥାନର ଇତିକଥା ବା ଇତିହାସ ଅର୍ଥ ସେହି ଅଞ୍ଚଳର ଐତିହାସିକ ତଥ୍ୟ ସମ୍ବଳିତ କଥା ବସ୍ତୁ ଉପରେ ଆଧାରିତ ଗବେଷଣା ମୂଳକ ପ୍ରବନ୍ଧ। ଭାରତ ଇତିହାସ ଅତି ପ୍ରାଚୀନ। ଏହା ବହୁ କେନ୍ଦ୍ରିୟ ଏଣୁ ଏହାକୁ ସମୂହଭାବେ ଅନୁଧ୍ୟାନ ନକରି ବିଭିନ୍ନ ସ୍ଥଳ ଓ ସ୍ତର ବିଶେଷରେ ଅନୁଧ୍ୟାନ କରିବା ଆବଶ୍ୟକ। ଏହି ଇତିହାସ ଅନୁଧ୍ୟାନ କରିବାକୁ ହେଲେ ଏହାର ଭାଷା, ସଂସ୍କୃତି କାବ୍ୟ, ପୋଥି, ଶିଳାଲେଖ, ମୁଦ୍ରା, ଓ ମୂର୍ତ୍ତୀ ଆଦି ପ୍ରାନ୍ତୀୟ ଭାବେ ଅନୁଧ୍ୟାନ କରିବା ଆବଶ୍ୟକ। ନନ୍ଦପୁର ଏହିଭଳି ଏକ ପ୍ରାନ୍ତୀୟ ଇତିହାସ ଯାହାର ପୁଙ୍ଖାନୁପୁଙ୍ଖ ଅନୁଧ୍ୟାନ ଓଡ଼ିଶା ତଥା ଭାରତ ଇତିହାସ ପାଇଁ ଏକ ଅବଦାନ। ପୁଣି କୌଣସି ସ୍ଥାନର ପରିଚୟ ଜାଣିବା ପୂର୍ବରୁ ଏହାର ଚର୍ତୁଃପାର୍ଶ୍ବର (ଚିତୁର୍ବର୍ତ୍ତୀ) କିଂଚିତ ଇତିହାସର ବର୍ଣ୍ଣନା ଜାଣିବା ଆବଶ୍ୟକ। ନନ୍ଦପୁର ପୂର୍ବତନ ଜୟପୁର ଜମିଦାରି ବା ଅବିଭାଜିତ କୋରାପୁଟ ଜିଲ୍ଲାର ରାଜଧାନୀ ଥିଲା। କୋରାପୁଟ ଜିଲ୍ଲାର ଇତିହାସ ଅତି ପୁରୁଣା। ଏଠାକାର ଅଧିକାଂଶ ଅଧିବାସୀ ଆଦିମ ଆଦିବାସି ସଂପ୍ରଦାୟର ଓ ହଜାର ହଜାର ବର୍ଷ ପୁରାତନ। ପୁରାଣ ଯୁଗର ପ୍ରସିଦ୍ଧ ପଞ୍ଚବଟୀ ଓ ଦଣ୍ଡକାରଣ୍ୟ ଏହି କୋରାପୁଟ ଜିଲ୍ଲା ଓ ତତ୍ ସଂଲଗ୍ନ ଘଞ୍ଚ ଅରଣ୍ୟ। ଏହା ନଳ, କାଳାଚୁରୀ, ଗଙ୍ଗ, ଶିଳାବଂଶି, ସୋମବଂଶି ଆଦି ରାଜ ବଂଶର ମଧ ଶାସନାଧିନ ଥିଲା। କୋଟପାଡ଼ ନିକଟସ୍ଥ ପୁଷ୍କରଣି ଦିନେ ନଳରାଜ୍ୟର ରାଜଧାନୀ ଥିଲା। ବଂଶଧାରା ନଦୀ ସଜ୍ୟା ଏକଦା ପ୍ରସିଦ୍ଧ ତ୍ରିକଳିଙ୍ଗର ଅଂଶବିଶେଷ ଥିଲା। ପାଇକ ପଡ଼ାସ୍ଥିତ ପାତାଳେଶ୍ବର ମନ୍ଦିର, ଚାମୁଣ୍ଡାର ମନ୍ଦିର ସମୂହ ସେହି ତ୍ରିକଳିଙ୍ଗାଧିପତି ଗଙ୍ଗ ବଶଂର ଚିହ୍ନ ସ୍ବରୂପ। ଏହାଛଡ଼ା ଏହି ଜିଲ୍ଲାର ଇତିହାସ ଲୁକ୍କାୟିତ ଅବସ୍ଥାରେ ଅଛି। ଐତିହାସିକ ତଥ୍ୟର ଅନୁସଂଧାନର ଅଭାବରୁ ଏହାର ଇତିହାସ ଅନୁଧ୍ୟାନ କରିବା କଷ୍ଟ ସାଧ ହୋଇ ପଡ଼ିଛି। ନାରାୟଣ ପାଟଣା, ଭୈରବ ସିଂହପୁର, ଜଗମୁଣ୍ଡା, ଗୁଣୁପୁର, ପାଇକପଡ଼ା, କେଚେଲା, ସୁବେଇ, ପାପଡ଼ାହାଣ୍ଡି, ଗୁପ୍ତେଶ୍ବର ଆଦି ଅନେକ ଐତିହାସିକ ସ୍ଥାନମାନଙ୍କ ମଧ୍ୟରୁ ନନ୍ଦପୁର ଅନ୍ୟତମ।

ଜୟପୁର ରାଜବଂଶର ରାଜଧାନୀ ନନ୍ଦପୁରର ଇତିହାସ ଅତି ପୁରୁଣା। ବର୍ତ୍ତମାନ ସୁଦ୍ଧା ଏହି ଅଞ୍ଚଳରେ ବହୁ ପୁରାତନ ତଥ୍ୟ ଦେଖିବାକୁ ମିଳେ। ନନ୍ଦପୁରର ଉତ୍ତରରେ ଖୋଦିତ ହୋଇଥିବା ତୁଇଗୋଟି ବିଶାଳ ପଥର ମୂର୍ତ୍ତୀ ବିଶାଳ ପଥର ନିର୍ମିତ ଗଣେଶ ବିଗ୍ରହ ତତ୍ ସନ୍ନିକଟ ଶିଳାଲେଖ ଉଲ୍ଲେଖନୀୟ। ନନ୍ଦପୁରସ୍ଥ ସର୍ବେଶ୍ବର ମନ୍ଦିର ଓ ଏଠାରେ ଥିବା ଶିଳାଲେଖ ଅନୁଧ୍ୟାନ କଲେ ଅନେକ ଐତିହାସିକ ତଥ୍ୟ ମିଳିପାରିବ। ଏଠାରେ ଅବସ୍ଥିତ ବତ୍ରିସ ସିଂହାସନ - ୩୨ ଗୋଟି ପଥର ପାହାଚ ଦ୍ବାରା ଆବୃତ ପ୍ରାୟ ଗୋଲାକାର ଶୀଳା। କିମ୍ବଦନ୍ତି କହେ ପୂର୍ବେ ଜୟପୁର ରାଜବଂଶର ରାଜାମାନେ ଏହା ଉପରେ ବସି ରାଜ୍ୟାଭିଷେକ ହେଉଥିଲେ। ନନ୍ଦପୁର ନିକଟବର୍ତ୍ତୀ ସୁବେଇର ଜୈନମଂନ୍ଦିର ଓଡ଼ିଶାର ପୁରାତନ ଜୈନ ମନ୍ଦିରମାନଙ୍କ ମଧ୍ୟରୁ ଅନ୍ୟତମ। ତା ଛଡ଼ା ନଂଦପୁର ରାଜ୍ୟର ଅନ୍ୟାନ ସ୍ଥାନମାନଙ୍କରୁ ମିଳୁଥିବା ଜୈନ ମୂର୍ତ୍ତୀଗୁଡ଼ିକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ଏକଦା ଏ ଅଞ୍ଚଳରେ ଜୈନ ଧର୍ମର ବହୁଳ ପ୍ରସାର ହୋଇଥିଲା।

ଜୟପୁର ରାଜ ବଂଶାବଳୀରୁ ଜଣାଯାଏ ଯେ ଏହାର ଉତ୍ପତ୍ତି ପୁରାଣ ଯୁଗୀୟ। ସୂର୍ଯ୍ୟବଂଶାଧିପତି କାଶ୍ମୀରଧିରାଜ କନେକ ସେନାଙ୍କ ଦ୍ବାରା ପ୍ରତିଷ୍ଠିତ ସେହି ବଂଶର ଦ୍ବାବିଂଶତମ ଉତ୍ତରାଧିକାରୀ ଯୁବରାଜ ବିନାୟକ ଦେବ କାଶ୍ମୀର ତ୍ୟାଗ କରି କାଶି ବିଶ୍ବେଶରଙ୍କ ଆଶୀର୍ବାଦ ଓ ସ୍ବପ୍ନାଦେଶରେ ନନ୍ଦପୁରକୁ ଆସି ସେଠାକାର ତତ୍କାଳୀନ ଶିଳା ବଂଶୀୟ ରାଜାଙ୍କ ଏକମାତ୍ର କନ୍ୟାଙ୍କୁ ବିବାହ କରି ଖ୍ରିଷ୍ଟାବ୍ଦ ୧୪୪୩ରେ ସିଂହାସନ ଆରୋହଣ କରି ଜୟପୁର ରାଜବଂଶ ସ୍ଥାପନ କରିଥିଲେ। ଏ ସଂପର୍କରେ ଐତିହାସିକ Oramଙ୍କ ମତରେ "ଜୟପୁର ରାଜବଂଶ ଗୋଟିଏ ରାଜାଙ୍କଠାରୁ ଉତ୍ପତ୍ତି ହୋଇଛି ଯେଉଁ ରାଜା ଏକଦା ମହାରାଜା ଜଗନ୍ନାଥ ରାଜ୍ୟରେ ଓ North Circasର ଗଜପତିଙ୍କ ଅତି ପ୍ରିୟପାତ୍ର ଥିଲେ। ମହାରାଜା ତାଙ୍କ କନ୍ୟାଙ୍କୁ ଏହି ରାଜାଙ୍କୁ ବିବାହ ଦେଇ ଏହି ରାଜ୍ୟ ତାଙ୍କୁ ଯୌତୁକ ହିସାବରେ ଦେଇଥିଲେ। ରାଜାଙ୍କ କୌଣସି ପୁତ୍ର ନଥିବାରୁ ବିନାୟକ ଦେବ ରାଜା ହେଲେ ଓ ସେହି ଦିନରୁ ଦେବ ଉପାଦ୍ଧି ପ୍ରଚଳିତ ହେଲା। କିନ୍ତୁ ସ୍ଥାନୀୟ ପ୍ରଜା ବିନାୟକ ଦେବଙ୍କୁ ଜଣେ ବିଦେଶୀ ଭାବି ବିଦ୍ରୋହ କରିଥିଲେ। ସେ ଅନେକ ପ୍ରଜାମେଳିର ସମ୍ମୁଖୀନ ହୋଇଥିଲେ। କିନ୍ତୁ ତତକାଳୀନ ସଂଗ୍ରାମ ବିରତିର (ବର୍ତ୍ତମାନର ସଂଗମ ବାଲସା) ସ୍ଥାନୀୟ ନେତା ଶ୍ରୀ ମୃତ୍ୟୁଞ୍ଜୟ ନିଶଙ୍କ ରାଜାଙ୍କୁ ସାହାଯ୍ୟ କରିଥିଲେ ଏବଂ ସିଂହାସନ ଆରୋହଣ କରାଇଥିଲେ। ଏଣୁ ରାଜା ଖୁସି ହୋଇ ମୃତ୍ୟୁଞ୍ଜୟଙ୍କୁ ନିଶଙ୍କ (fearless) ଉପାଧିରେ ଭୂଷିତ କରି ତାଙ୍କୁ ନାରାୟଣପାଟଣା, ତୁମୁସୁକି, କତାବାଇସା, ପାର୍ବତିପୁର ଏହିପରି ଅନେକ ଅଞ୍ଚଳର ଜମିଦାର ଘୋଷଣା କରିଥିଲେ ଏବଂ ତାମ୍ର ଫଳକ ପ୍ରଦାନ କରିଥିଲେ। ବର୍ତ୍ତମାନ ସୁଦ୍ଧା ଏହି ତାମ୍ରଫଳକ ଦେଖିବାକୁ ମିଳେ।

ଶ୍ରୀ ଏ.ଭାଡ଼ିଭେଲୁ ୧୯୦୩ରେ ମୁଦ୍ରିତ ପୁସ୍ତକ Aristocracy of Southern Indiaରେ ଏ ସଂପର୍କରେ ଉଲ୍ଲେଖ କରିଛନ୍ତି।

ନନ୍ଦପୁର ରାଜ୍ୟର ସୀମା ଉତ୍ତରରେ କଳାହାଣ୍ଡି ପର ବୃଦ୍ଧାଇଂଗମ, ପୂର୍ବରେ ଚିକାକୋଲ (ବିଶାଖାପାଟଣା) ପଶ୍ଚିମରେ ବସ୍ତର ରାଜ୍ୟ ଓ ରାସକଲି ନଦୀ ଓ ଦକ୍ଷିଣରେ ରାୟବାରମ ଓ ଗୋଦାବରୀ ନଦୀ। କାରାମାଇ କେଲଙ୍କ ବିବରଣୀରୁ ଜଣାଯାଏ, ଇଷ୍ଟଇଣ୍ଡିଆ କମ୍ପାନୀର ଶାସନାଧୀନ ପୂର୍ବରୁ ଜୟପୁର ରାଜ୍ୟ (ହାଇଦ୍ରାବାଦ ଗୋଲକଣ୍ଡା ନିଜାମଙ୍କ ଅଧିନସ୍ଥ ଥିଲା।

ଅନେକ ଶତାବ୍ଦି ପୂର୍ବରୁ ଜୟପୁର ରାଜବଂଶର ଉତ୍ପତ୍ତି କାଶ୍ମୀର ରାଜ୍ୟରୁ ହୋଇଥିବାର ଜଣାଯାଏ। ସୂର୍ଯ୍ୟବଂଶର କନକସେନାଙ୍କ ବଂଶଜ କୃଷ୍ଣିରାଜ ଦେଓ ଏକଦା କାଶ୍ମୀରର ରାଜା ଥିଲେ। ତାଙ୍କର ତିନୋଟି ପୁତ୍ର ଥିଲେ ଏବଂ ଦ୍ୱିତୀୟ ପୁତ୍ର ବିନାୟକ ଦେବ ବଡ଼ଭାଇଙ୍କ ଉପସ୍ଥିତିରେ ରାଜା ହେବାରୁ ବଞ୍ଚିତ ହୋଇ କାଶୀ ତୀର୍ଥରେ ବାହାରିଲେ। ସେଠାରେ ସେ ଦୀର୍ଘ ୨୧ ଦିନ କୋଠର ତପସ୍ୟା କରି କାଶୀ ବିଶ୍ୱନାଥଙ୍କ ଆଶୀର୍ବାଦ ଲାଭ କଲେ ଓ ନନ୍ଦପୁର ଯାଇ ସିଂହାସନ ଆରୋହଣ କରିବାକୁ ସ୍ୱପ୍ନାଦେଶ ପାଇଲେ। କାଶୀ ବିଶ୍ୱେଶ୍ୱରଙ୍କ ଆଦେଶ ପାଳନରେ ସେ ନନ୍ଦପୁର ଅଭିମୂଖେ ଯାତ୍ରା ଆରମ୍ଭ କଲେ। ସେ କାଳରେ ଗମନା ଗମନରେ ମାତ୍ରା ଜନିତ ଅସୁବିଧା ଥିଲେ ମଧ୍ୟ କ୍ଳାନ୍ତି ଅନୁଭବ ନକରି ସ୍ୱାଧିନ ରାଜ୍ୟର ରାଜ୍ୟାଭିଷେକ ଅଭିଳାଷରେ ନନ୍ଦପୁର ପଦାର୍ପଣ କଲେ। ନନ୍ଦପୁରସ୍ଥ ସର୍ବେଶ୍ୱର ମନ୍ଦିରରେ ପାର୍ଥନା କଲେ। ସେଦିନ ରାତ୍ରିରେ ଭଗବାନ ସର୍ବେଶ୍ୱର ସେଠାକାର ତତ୍‌କାଳୀନ ଶୀଳା ବଂଶର ରାଜାଙ୍କ ସ୍ୱପ୍ନରେ ଆଦେଶ ଦେଇ କହିଲେ ଯେ, ତାଙ୍କ ମନ୍ଦିରରେ ଏକ ଦକ୍ଷ ଯୁବରାଜ ଉପସ୍ଥିତ ଏବଂ ସେ ରାଜକନ୍ୟାଙ୍କ ଲାଗି ଏକ ଉପଯୁକ୍ତ ବରପାତ୍ର ନିଜର କୌଣସି ପୁତ୍ର ସନ୍ତାନ ନଥିବାରୁ ଭଗବାନଙ୍କ ଆଦେଶାନୁଯାଇ ମହାରାଜା ଯୁବରାଜଙ୍କୁ ଜାମାତା କରି ନିଜ ରାଜ୍ୟର ରାଜା କରିବାକୁ ସ୍ଥିର କଲେ। ମନ୍ଦିରରେ ପହଞ୍ଚି ଯୁବରାଜଙ୍କ ଗାମ୍ଭୀର୍ଯ୍ୟ ଓ ବୁଦ୍ଧିମତ୍ତାରେ ମୁଗ୍ଧ ହୋଇ ସାମାଜିକ ଭେଦଭାବର କୌଣସି ଆଶଙ୍କା ନକରି ନିଜ କନ୍ୟାକୁ ଦାନ କରିଥିଲେ। ବିନାୟକ ଦେବ ପରେ ତାଙ୍କ ରାଜ୍ୟକୁ ସୂଚାରୁ ରୂପେ ଶାସନ କରିଥିଲେ। ଦୀର୍ଘ ୩୩ ବର୍ଷ ଶାସନ କରି ୧୪୭୬ରେ ନିର୍ବାଣ ପ୍ରାପ୍ତ ହୋଇଥିଲେ। ତାଙ୍କ ପୁତ୍ର ବିଜୟ ଚନ୍ଦ୍ରାକ୍ଷ ଦେଓ ୧୫୧୦ ପର୍ଯ୍ୟନ୍ତ ଶାସନ କରିଥିଲେ। ତାଙ୍କ ସମୟରେ କର୍ଣ୍ଣାଟକରୁ ଦେବୀ କନକ ଦୂର୍ଗା ଓ ଭଗବାନ ବଲ୍ଲଭ ନାରାୟଣଙ୍କୁ ଆଣି ନନ୍ଦପୁରରେ ସ୍ଥାପନ କରିଥିଲେ। ଏହି ରାଜବଂଶ ନନ୍ଦପୁରରେ ଅନେକ ଦିନ ଧରି ଶାସନ କରିବାପରେ ମହାରାଜା ବୀର ବିକ୍ରମଙ୍କ ଶାସନ କାଳରେ (୧୬୩୭-୧୬୬୯) ରାଜ୍ୟର ପୋଡ଼ଶୀ ବିଦେଶୀ ରାଜ୍ୟରୁ ନିଜକୁ ଦୂରେଇ ରଖିବା ନିମନ୍ତେ ରାଜଧାନୀ ନନ୍ଦପୁରରୁ ଜୟପୁରକୁ ସ୍ଥାନାନ୍ତରିତ ହେଲା। ଜୟପୁରରେ ନାକ୍‌ଟି ଡଙ୍ଗର ପାହାଡ଼ ନିକଟରେ ଏକ ଗଡ଼ ନିର୍ମିତ ହେଲା। ବର୍ତ୍ତମାନ ସୁଦ୍ଧା ଏହି ଗଡ଼ର ଭଗ୍ନାବଶେଷ ଦେଖିବାକୁ ମିଳେ। ଏହି ସମୟରେ ହାଇଦ୍ରାବାଦର ଗୋଲକଣ୍ଡା ନିଜାମ ବିକ୍ରମ ଦେବଙ୍କୁ ଗୋଟିଏ ଖଣ୍ଡା, ମହିମରାଟ ଏବଂ ପୀତ ହାଉଦା ସଜ୍ଜିତ ହସ୍ତୀ ଦେଇ ନିମ୍ନୋକ୍ତ ଉପାଧିରେ ଭୂଷିତ କରିଥିଲେ।

"ଆଳେମ ମହାରାଜା, ୟୁଯାଦୁଦ - ଭେଲ, ମହାବାଟ - ଅସାର, ଯେଦଲ ଯେମୀନ, ସୁଲତାନ ସମସାମୟ, ଖିଲପତ୍ୟ - ଇମଲାମ ଶ୍ରୀ ଝାଡ଼ଖଣ୍ଡ ବାଦସାହ ଜୟପୁର ଶିରକାର।

— ବିଶାଖା ପାଟଣା ଜିଲ୍ଲାର ଏହି ପାହାଡ଼ିଆ ଅଞ୍ଚଳ, ଜୟପୁର ଜମିଦାରି ନାମରେ ଖ୍ୟାତ; ଏକଦା ନନ୍ଦପୁର ରାଜ୍ୟର ଅଂଶ ବିଶେଷ ଥିଲା। ବର୍ତ୍ତମାନ ସୁଦ୍ଧା 'ନନ୍ଦପୁର ଭୂପତି' ପଦବୀ ବ୍ୟବହାର ହେଉଥିଲା।

କିମ୍ବଦନ୍ତି କହେ ଶ୍ରୀ ପୁରୁଷୋତ୍ତମ ନାମରେ ଓଡ଼ିଶାର ଗଜପତି କାଞ୍ଚିବିଜୟ କରି ସେଠାରୁ ରାଜକନ୍ୟା ପଦ୍ମାବତୀ, ଗଣେଶ, ଗୋପାଳ, କନକ ଦୂର୍ଗା, ବଲ୍ଲଭନାରାୟଣ ଆଦି ଦେବଦେବୀଙ୍କୁ ଧରି ଆସିବା ସମୟରେ ରାସ୍ତାରେ ନନ୍ଦପୁର ରାଜ୍ୟ ଆକ୍ରମଣ କରିବାରୁ ନନ୍ଦପୁର ରାଜା ଶ୍ରୀ ବିଜୟ ଚନ୍ଦ୍ରାକ୍ଷ ଦେବ ଯୁଦ୍ଧ ଧମକ ଦେଇଥିଲେ। ଫଳରେ ଗଜପତି ଭୟଭୀତ ହୋଇ ଏହି ଦୁର୍ଗମ ଗିରି ପର୍ବତ ଲଙ୍ଘନ କରିବାର ଭୟରେ ଶ୍ରୀ ବଲ୍ଲଭ ନାରାୟଣ ଓ କନକ ଦୂର୍ଗା ମୂର୍ତ୍ତି ଛାଡ଼ି ପଳାଇ ଥିଲେ। ଏହି ଘଟଣାର ବର୍ଣ୍ଣନା ଓଡ଼ିଶା ଗଜପତିଙ୍କ ଭୋଇ ଗୋପିନାଥ ଦାସଙ୍କ ଘରେ ମାଦଳା ପାଞ୍ଜିରେ ଲିଖିତ ରହିଛି। ପୁଣି ଓଡ଼ିଆ ପଣ୍ଡା' ନାମକ ବହିରେ ମଧ୍ୟ ଦେଖିବାକୁ ମିଳେ। ସେହି ଦିନଠାରୁ ସୁବର୍ଣ୍ଣ ନିର୍ମିତ କନକ ଦୁର୍ଗାଙ୍କୁ ନିଜ ରାଜଧାନୀରେ ପ୍ରତିଷ୍ଠା କରାଇ ଦଶହରା ପର୍ବ କରାଇ ଥିଲେ ଓ ଅତି ସୁଲଳିତ ଚତୁର୍ଭୂଜ ମଣି ବିଗ୍ରହ ପ୍ରଚଳିତ ଶ୍ରୀ ବଲ୍ଲଭ ନାରାୟଣଙ୍କୁ ନାରାୟଣପାଟଣାଠାରେ ପ୍ରତିଷ୍ଠା କରାଇଥିଲେ। ଲୋକଙ୍କ ମତରେ ଜୟପୁରର ଦଶହରା ଉତ୍ସବ ମହିଶୂର ପରେ ଦେଶର ଦ୍ୱିତୀୟ ବିଖ୍ୟାତ ଯାତ୍ରାଥିଲା।

ପ୍ରମାଣ ଅଛି ୧୮୦୦ ଶତାବ୍ଦିରେ ନନ୍ଦପୁର ଶାସକଙ୍କ ରାଜ୍ୟ କେବଳ ଏହି ପାହାଡ଼ିଆ ମୂଲକ ନଥିଲା। ଏହା ଉତ୍ତରରେ ନାଗାବଳୀ ଠାରୁ ଦକ୍ଷିଣରେ ପ୍ରାୟ ଟୁନି ପର୍ଯ୍ୟନ୍ତ ବିସ୍ତୃତ ଥିଲା। ଏହି ରାଜା ବହୁ ପ୍ରତାପୀ ଥିଲେ। ୧୬୦୦ ଶତାବ୍ଦୀରେ ମୋଗଲ ବାଦସାହ ଦକ୍ଷିଣାତ୍ୟ ଜୟକରି ଜୟପୁର ରାଜାଙ୍କ ପ୍ରତାପକୁ ଆୟତ୍ତରେ ରଖିବା ପାଇଁ ମଲକାନଗିରିଠାରେ ଗୋଟିଏ ସୈନ୍ୟ ଛାଉଣୀ ପକାଇଥିଲେ।

ନନ୍ଦପୁର ରାଜ୍ୟରେ କାଶ୍ମୀର ରାଜବଂଶର ବିନାୟକ ଦେବ ଶିଳା ବଂଶର ଶେଷ ରାଜ କନ୍ୟାଙ୍କୁ ବିବାହ ହେବାର

ସୂଚନା ଥିଲେ ମଧ ଶିଳା ବଂଶ ସଂପର୍କରେ କୌଣସୀ ପ୍ରମାଣ ମିଳୁ ନାହିଁ। କିନ୍ତୁ ସାମାଣ୍ଡଳ ଓ ଶ୍ରୀକୂର୍ମର ଶିଳାଲେଖରେ ବିନାୟକ ଦେବଙ୍କ ଦୁଇପୁରୁଷ ପୂର୍ବର ଶିଳାବଂଶ ଇତିହାସର ସୂଚନା ଦିଏ। ସେ ସମୟରେ ଶିଳା ବଂଶର ବଣ୍ଡରାଜ ନନ୍ଦପୁରର ଭୂପତି ଥିଲେ। ତାଙ୍କ ପତ୍ନି ସିଙ୍ଗା ଓଡ୍ଡାଡ଼ିର ରାଜା ଜୟନ୍ତରାଙ୍କ କନ୍ୟା ଥଟନ୍ତି। ତାଙ୍କ ପୁତ୍ର ପ୍ରତାପ ଗଙ୍ଗରାଜ ୧୪୨୬ରୁ ୧୪୩୫ ପର୍ଯ୍ୟନ୍ତ ଶାସନ କରିଥିଲେ। ଗଙ୍ଗରାଜ ଓଡ଼ିଶାର ମତ୍ସ୍ୟ ବଂଶୀୟ ରାଜା ଅର୍ଜୁନ ଦେବରାଜଙ୍କ ସମସାମୟିକ ଥିଲେ ଏବଂ ତାଙ୍କ ମୃତ୍ୟୁ ପରେ କୌଣସି ସନ୍ତାନ ନ ଥିବାରୁ ସେହି ରାଜ୍ୟ ନନ୍ଦପୁର ଭୂପତିଙ୍କ ନିକଟକୁ ଆସିଲା।

ନନ୍ଦପୁର ଓ ନନ୍ଦବଂଶୀୟ ରାଜାମାନଙ୍କ ସହ ସଂପର୍କ ଥିବାର ମଧ ପ୍ରମାଣ ମିଳେ। ଜଟିପଲ୍ଲୁର ବୌଦ୍ଧ ସ୍ମୃତିଗୁଡ଼ିକୁ ଅନୁଧାନ କଲେ ଜଣାଯାଏ ଯେ, ଏଥିରେ ନନ୍ଦପୁର ନାମ ଉଲ୍ଲେଖ କରାଯାଇଛି। ଏହା ପ୍ରାକୃତ ଭାଷାରେ ଲିଖିତ। ଏହାର ଇଂରାଜୀ ଅନୁବାଦ "Gift by the woman from Nandapur and novices (Samanudisa) from Suvanamka in the Ayasaksathi Comittee of Gilankera (Glanakrva)" ବର୍ତ୍ତମାନ ସୁଦ୍ଧା ଏହି ଦୁଇଗୋଟି ସ୍ଥାନର ନାମ ଚିହ୍ନଟ କରାଯାଇ ନାହିଁ। ଯଦି ହୁଏ ଅନେକ ତଥ୍ୟ ମିଳିପାରିବ।

ନନ୍ଦପୁର ବର୍ତ୍ତମାନ ପାହାଡ଼ ପର୍ବତ ଘେରା ନଦନଦୀ ପୂର୍ଣ୍ଣ ଏକ ସୁନ୍ଦର ଗ୍ରାମ। ବର୍ତ୍ତମାନ ସୁଧା ଏଠାରେ ସେହି ପୂର୍ବ ଇତିହାସର ସାକ୍ଷି ସ୍ୱରୂପ ଦେଖିବାକୁ ମିଳେ ପୁରୁଣା ପ୍ରାସାଦର ଭଗ୍ନ ଇଟା, ମାଟିପାତ୍ର, ପଥର ମୂର୍ତ୍ତୀ ଓ ଲୋକ ସ୍ମୃତି। ମାନ୍ଦ୍ରାସ ପ୍ରେସିଡେନ୍‌ସିର ସମସ୍ତ ଜମିଦାରୀମାନଙ୍କ ମଧ୍ୟରେ ନନ୍ଦପୁର ଇତିହାସ ବହୁ ପୁରୁଣା। ମେଘଦୂତରେ କାଳିଦାସଙ୍କ ବର୍ଣ୍ଣନା ଏବଂ ବତ୍ରିସ ସିଂହାସନକୁ ବିଚାର କଲେ ମନେ ହୁଏ ସତେ ଯେପରି ଏବଂ ପ୍ରଶ୍ନ ଉଠେ କାହିଁକି ଗୁପ୍ତଯୁଗର ସେହି ବହୁ ଚର୍ଚ୍ଚିତ ବତ୍ରିସ ସିଂହାସନ ନନ୍ଦପୁର ହୋଇ ନଥିବ ?

ଏହି ପୁରାତନ ଐତିହ୍ୟ, ଗୌରବ ସବୁ ବର୍ତ୍ତମାନ ଲୁପ୍ତ। ନନ୍ଦପୁର ଯାହା ଏକଦା ସଂସ୍କୃତିର ସମୃଦ୍ଧଶାଳୀ କେନ୍ଦ୍ର ତାହା ବର୍ତ୍ତମାନ ବନ୍ୟଜନ୍ତୁ ଓ ଆଦିବାସି ଅନୁନ୍ନତ ଲୋକଙ୍କ ଦ୍ୱାରା ପରିପୂର୍ଣ୍ଣ। ତଥାପି ଏହା ଅନିସନ୍ଧିତ୍ସୁ ଐତିହାସିକ ସାହିତ୍ୟିକ ଓ ବିଜ୍ଞ ପଣ୍ଡିତଙ୍କ ପାଇଁ ଏକ ସମୃଦ୍ଧିଶାଳୀ ପୀଠ। ପ୍ରନତ୍ତ୍ୱ ବିଭାଗ ତରଫରୁ ଏହାକୁ ଅନୁଧାନ କଲେ, ଏଠାକାର ମିଳୁଥିବା ମୁଦ୍ରା, ତାମ୍ରଲିପି, ଶିଳାଲେଖ, ପୋଥି ଆଦିର ପୁଙ୍ଖାନୁପୁଙ୍ଖ ଗବେଷଣା କଲେ ଅନେକ ଇତିହାସ ସମ୍ବଳିତ ତଥ୍ୟ ମିଳି ପାରିବ ନନ୍ଦପୁର ଦିନେ ଯେ ଏକ ସମୃଦ୍ଧିଶାଳୀ ରାଜ୍ୟ ଥିଲା ଏଥିରେ ସଂଦେହ ନାହିଁ।


**ସହାୟକ ଗ୍ରନ୍ଥ :**

ଜୟପୁର ରାଜବଂଶାବଳୀ - ୰ ରାମନାଥ ନନ୍ଦ ଶର୍ମା (ସଂସ୍କୃତ)
କାରମାଇକେଲ ରିପୋର୍ଟ
ଭିଜୟନଗରମ୍ ଗେଜେଟିୟାର
ଭିଜୟନଗର ମେନୁଆଲ
୰ ଭାଡ଼ିଭେଲୁ - ଆରିଷ୍ଟୋକ୍ରେସି ଅଫ୍ ସାଉଦେର୍ଣ୍ଣ ଇଣ୍ଡିଆ - ୧) (ମାନ୍ଦ୍ରାସ - ୧୯୦୩)
ଜି. ରାମଦାସ History of Jeypore
Bihar Orissa Historical Rescach Journal
କୁମାର ବିଦ୍ୟାଧର ସିଂ ଦେବ A Forshaken Kingdom
R.C.S. Bells - ଗେଜେଟିଅର
କୋରାପୁଟ ଗେଜେଟିୟର - ନିଳମଣି ସେନାପତି ନବିନ ଚନ୍ଦ୍ର ସାହୁ

# ମୋ ସ୍ମୃତିର ଜୟପୁର

ଶ୍ରୀ ନାଥ ମିଶ୍ର

"ଆଜି ସବୁ ଯେମିତି ନୂଆଁ ନୂଆଁ ଲାଗୁଛି। ମୋରି ସହର, ମୋରି ଲୋକ ଗହଣରେ ମୁଁ ଆଜି ନବାଗତଟେ ପରି ଆଖିମେଲି, ପାଟି ଖୋଲି ବିସ୍ମିତ ଦୃଷ୍ଟିରେ ଚାହିଁ ରହୁଛି - କାହିଁ ଆଗରୁ ତ ଏମିତି ନଥିଲା। ନଥିଲା ଏ କୋଳାହଳ, ଯାନ ବାହନ, ନଥିଲା ଏ କୋଠା - ବାଡ଼ି ଅବା ସୁନାବେଢ଼ା, ଦାମନଯୋଡ଼ୀ, ସେବା ପେପରମିଲ। ଯାନ୍ତ୍ରିକ ଧୂଆଁରେ ଆଚ୍ଛାଦିତ ନଥିଲା ଏ ସହର। ନଥିଲା ଏ ଠେଲା ପେଲା - ନଥିଲା ଅର୍ଥଲାଭ ପାଇଁ ଏ ଛଂଦ, କପଟ, ତଂଟି କଟାକଟି। ନାକଟି ଡଙ୍ଗରର ସବୁଜିମା ଭେଦକରି ଯେତେବେଳେ ସୂର୍ଯ୍ୟାଲୋକ ପଡ଼ୁଥିଲା ସୂର୍ଯ୍ୟମହଲର କୃଷ୍ଣ ଚୂଡ଼ା ଉପରେ ପ୍ରକୃତିର ମଣିଷ ଭିତରେ ଆସୁଥିଲା ଏକ ନୂତନତ୍ୱ। ପଦ୍ମ ଫୁଲର ପାଖୁଡ଼ା ଖୋଲିବା ପରେ ଆସ୍ତେ ଆସ୍ତେ ଚଳ ଚଞ୍ଚଳ ହେଉଥିଲା ଏ ସହର। ଆତ୍ମୀୟତା ହସ, ଖୁସି କଥାବାର୍ତ୍ତା ମାଧ୍ୟମରେ ଦିନ ବିତୁଥିଲା - ହଇହେ ଦାସେ। ହଇହେ ପାତ୍ରୁଲୁଗାରୁ କ'ଣ ମିଶ୍ରେ? ଦଣ୍ଡବତ ମଣିମା! ର ସ୍ୱର କେବଳ ଚର୍ତୁଦିଗରେ। ତା ସହିତ ଆରଂଭ ହେଉଥିଲା ଛୋଟ ସହର ଜୟପୁରର ପେଟ ପାଟଣାର ଧନ୍ଦା। ପ୍ରତିଯୋଗିତା ନଥିଲା - ନଥିଲା ପ୍ରତିଦ୍ୱନ୍ଦିତା ଅବା ପରଶ୍ରୀ କାତରତା।

ହେତୁ ଆସିବା ଦିନୁ ଏ ଦୃଶ୍ୟ ମୋ'ର ଅଛି। ମନେ ଅଛି ମୋ ଘର ସାମ୍ନାର ଜଗନ୍ନାଥ ସାଗର, ଯାହାର ଆୟତନ ପ୍ରାୟ ବର୍ତ୍ତମାନଠାରୁ ୨ ଗୁଣ ଥିଲା ତା ଚର୍ତୁପାର୍ଶ୍ୱରେ ହୁଡ଼ା ରାସ୍ତାଟିଏ - ସମୁଦ୍ରପରି ବ୍ୟାପ୍ତ ଥିଲା ଏ ସାଗର। ତାର ଅପରପଟରେ 'ମେଘମାଳ ତୋଟା' ଏକ ଭୌତିକ ପରିବେଶ ସୃଷ୍ଟିକରି ରଂଗ ବଦଳାଉ ଥିଲା ସନ୍ଧ୍ୟା ପୌଷ ଆକାଶର ନିଷ୍ପିତ ରୂପେ ସୃଷ୍ଟି କରୁଥିଲା ନିଜସ୍ୱ ପ୍ରତିବିଂବ।

ସେ ପ୍ରତିବିଂବରେ ଉଲ୍ଲସିତ ହୋଇଥିଲା ଆମ ପିଲାମନ ଜଗନ୍ନାଥ ସାଗର ହୁଡ଼ାରୁ କେହି ଜଣେ ଅଙ୍ଗୁଳି ନିର୍ଦ୍ଦେଶ କରି କହୁଥିଲା ହେଇ ଦେଖ 'ନେଳି ଆଲୁଅଟା' ଡାହାଣୀମାନେ ବାହାରିଲେଣି। ନିଜର ସମସ୍ତ ଭାବପ୍ରବଣତାକୁ ଛାତିଭିତରେ ପୂରାଇ, ଭୟରେ ଦୌଡ଼ି ଆସୁଥିଲୁ ଭୟ କରୁଥିଲୁ କାଳେ ସେ ଡାହାଣୀ ଆଲୁଅଟା ଆମ ପଟେ ମାଡ଼ି ଆସୁ ନାହିଁ ତ? ଦୌଡ଼ି ଦୌଡ଼ି ଘର ମୁହଁ ହୋଇ ଫେରୁଥିଲୁ। ପଞ୍ଚାନନ ମନ୍ଦିର ହୋଇଗଲେ - ଭୟ ଦୂର ହୋଇ ଯାଉଥାଏ - ବିଶ୍ୱାସ ଥିଲା ମନ୍ଦିର ପାଖରେ ଭୂତ ଡାହାଣୀ ପଶି ପାରିବେ ନାହିଁ।

ସନ୍ଧ୍ୟା ଆସୁଥିଲା, ସେହି ନିଶୁଆ ଲୋକଟିର ନିର ଗହନତା ଭିତରେ। ସେ ଥିଲା ଆମ ପାଇଁ ଦେବ ପ୍ରତିମ ପରି ଲୋକଟିଏ ଯିଏ ଅଂଧକାରକୁ ଦୂରକରି ଲେମ୍ପପୋଷ୍ଟରେ ଆଲୁଅ ଲଗାଇ ନିଶୁଣିଟି କାଂଧରେ ଉଠାଇ ଆଣୁଥିଲା। ମ୍ୟୁନିସିପାଲିଟିର ଲୋକଟିଏ କାମ ଥିଲା ଆମ ସାହିଗୁଡ଼ିକର ଲେମ୍ପ ପୋଷ୍ଟରେ ତେଲଦେଇ ସନ୍ଧ୍ୟାରେ ବତି ଲଗାଏ। ସତେ ସେମିତି, ରାତିର ବାର୍ତ୍ତାବହ ସେ। ତାକୁ ଦେଖିଲେ ପିଲାଏ ଦୌଡୁଥିଲେ ଘର ମୁହାଁ। ରାତ୍ରିଟି କଟୁଥିଲା ଆମ ଘର ସାମ୍ନାରେ ଥିବା 'ବଟଗଛ'ରେ କେଉଁ ଯୁଗରୁ ବସା ବାନ୍ଧି ଥିବା ବ୍ରହ୍ମରାକ୍ଷସର ଭୟରେ - କେତେ ହନୁମାନ ମନ୍ତ୍ର - କେତେ ଗାୟତ୍ରୀ ମନ୍ତ୍ର ଯେ ଖନିପାଚିରୁ ବାହାରୁ ନଥିଲା ସତେ - ଅଭୟବାଣୀ ଶୁଣାଇ ଗୁରୁଜନ କହୁଥିଲେ - ପିଲାମାନଙ୍କୁ କିନ୍ତୁ ବ୍ରହ୍ମରାକ୍ଷସ କିଛି କରିବ ନାହିଁ - ହଁ ବେଳେବେଳେ ପାଠ ପଚାରିବ - ଉତ୍ତର ପାଇଗଲେ ମାଫ୍ ନଚେତ୍ - ତେଣୁ ପାଠ ପଢ଼ିବାର ଆବଶ୍ୟକତା ଥିଲା। ନିଜ ପାଇଁ ନୁହେଁ ବ୍ରହ୍ମରାକ୍ଷସ ପାଇଁ।

ସେମିତି ଥିଲା। ଏ ପ୍ରକାଣ୍ଡ ସୂର୍ଯ୍ୟ ମହଲ। ତା' ଭିତରେ ଥିବା ଅସଂଖ୍ୟ ମନୋହର କନିଅର ଫୁଲ ତଥା କୃଷ୍ଣଚୂଡ଼ାର ଅଶେଷ ଭଣ୍ଡାର। ଫୁଲଟିଏ ଆଣିବା ପାଇଁ ଆଗ୍ରହ ତ ବଢ଼େ ନିଶ୍ଚୟ ତଥାପି, ତା ଭିତରେ ଥିବା 'ବଣ୍ଡା ବାଘ' ଆମର ସମସ୍ତ ଆନନ୍ଦକୁ ଛିନ୍‌ଭିନ୍ କରିଦିଏ। କିଏ ଜଣେ ବୁଢ଼ାଲୋକ କହିଦିଏ - ପାହାଡ଼ିଆ ବା ସଂଧ୍ୟାରେ 'ବଣ୍ଡାବାଘ' ପଥର ମୂର୍ତ୍ତି ଭିତରୁ ବାହାରି ବାଘ ରୂପରେ ବୁଲୁଛି - କିନ୍ତୁ ଆମେ ବୁଝିପାରୁ ନଥିଲୁ 'ରାଜ ଦରବାରର ପରିତ୍ୟକ୍ତ ପଥର ତୋପ ହିଁ ଆମର ପରିଚିତ ବଣ୍ଡା ବାଘ।'

ବୟସ ସାଙ୍ଗେ, ତାର ସ୍ମୃତି, ତା ସହିତ ଜଡ଼ିତ ଆମର କଳ୍ପନା ଆମ ମନକୁ ଅଥୟ କରୁଥିଲା। ତା ପାଖରେ ଥିବା 'ବାଘ ଭଣ୍ଡାର' ଦୁଇ ଚାରୋଟି ଭଂଗା ଯନ୍ତା - ଏବଂ ଘୋଡ଼ାଶାଳ ତଥା ପାଂଚ ଛଅଟା ଘୋଡ଼ାଟଣା 'ଟମ୍ ଟମ୍' ଗାଡ଼ି ରାଜକୀୟ ପରିବେଶର ସ୍ମୃତି ବହନ କରୁଥିଲା।

ସେହି ନାକଟି ଡଙ୍ଗର ପର୍ବତର ବିଶାଳତା, ଜଗନ୍ନାଥ ସାଗରର ବ୍ୟାପ୍ତତା, ମେଘମାଳ ତୋଟାର ଘଂଚତା, ସତୀ ନଦୀର ଧୀର ମନ୍ଥର ଗତି, କାହିଁକି କେଜାଣି ଆମ ମନରେ ଗଭୀର ପ୍ରଭାବ ପକାଇ ଥିଲା। ସେହି ଅଣଚୁଣିଆ ମାଟି କାଦୁଅ ରାସ୍ତାରେ ସକାଳୁ ସ୍କୁଲ ଗଲା ବେଳକୁ ପ୍ରତିଦିନ ଦିଶୁଥାନ୍ତି ଜଣେ ଲୋକ ହାତରେ ବାଡ଼ିଟିଏ - ମୁଣ୍ଡରେ ଟୋପିଟିଏ।

ଦେହ ଉପରେ ମଠା ଚଦରଟିଏ - ପାହାନ୍ତିଆରୁ ଉଆସ ଭିତରୁ ବାହାରି ସବୁ ସାହି ବୁଲୁଥାନ୍ତି - କେମିତିବା ଜାଣିଥାନ୍ତୁ ଯେ ସେ ହେଉଛନ୍ତି 'ଚୋର' ରଜା କୁମାର ବିଦ୍ୟାଧର ସିଂହ ଦେବ - ମ୍ୟୁନିସିପାଲିଟିର ଚେୟାରମେନ୍ ତଥା ପ୍ରଖ୍ୟାତ ଐତିହାସିକ 'Nandpur the Forseken kingdom'ର ଲେଖକ। ତଥାପି ଆମେ କାହିଁକି କେଜାଣି ସମ୍ମାନ ଦେଉଥିଲୁ ଲୋକଟିକୁ - ସୁନ୍ଦର ଚେହେରା, ହସ ମୁଖର ଲୋକଟିକୁ ସାମ୍ନାରେ ଦିନେ ଦିନେ ପଡ଼ିଯାନ୍ତି ପ୍ରତାପ ନାରାୟଣ ବାବୁ ବାବା ସାହେବ ଏମାନେ ସମସ୍ତେ ଆମର କଳ୍ପନାର ରାଜା - ସାଧାରଣ ହାଫପେଣ୍ଟ ଓ ମଟର ସାଇକେଲ୍‌ରେ ସାଧାରଣ ଲୋକଙ୍କ ସହ ଯେତେବେଳେ ସେମାନେ ଫୁଟ୍‌ବଲ ଭଲିବଲ ଖେଳିବା ପାଇଁ ଉଆସର ସମସ୍ତ ଗାମ୍ଭୀର୍ଯ୍ୟ, ଗରିମା, ଥାଟ୍ ଛାଡ଼ି, ଉପିତ ହୋଇ ଥାନ୍ତି ଅନ୍ୟ ଦ୍ୱାରା ଜୁଲ ସଟ୍‌ଟେ ପାଇଁ। ଖେଳପାଇଁ ସେମାନଙ୍କ ଜନ୍ମ। ଖେଳରେ ସେମାନଙ୍କ ମୃତ୍ୟୁ। ତାଙ୍କ ଛଡ଼ା ବି ଆମ ପାଇଁ ଅନ୍ୟ କେତେକ ବ୍ୟକ୍ତି ବିଶେଷ ଥିଲେ ଯେଉମାନଙ୍କ ପାଇଁ ଆମ ହାତ ଦୁଇଟି ଛାଏଁ ଛାଏଁ ଉପରକୁ ଉଠିଯିବା ସଂଗେ ମନ ଭିତରେ ଭୀତି ସଂଚାର ହୋଇ ଯାଉଥିଲା - ସେମାନଙ୍କ ମଧ୍ୟରେ ଚାଂଦ ଆଙ୍ଗା, ସହଦେବ ଆଙ୍ଗା, ଅନନ୍ତ ମିଶ୍ର ଆଙ୍ଗା ନବୀନ ଆଙ୍ଗା ତଥା ଶ୍ରୀ ଗଂଗାଧର ପଣ୍ଡା ଶ୍ରୀ ହରି ହରି ନନ୍ଦ, ବିଦ୍ୟାଭୂଷଣ ନନ୍ଦ, ମାଗତୁ ପୂଜାରୀ, ଲିଙ୍ଗରାଜ ବୈଦ୍ୟ ତଥା ରାଧାକୃଷ୍ଣ ସାହୁ, ରାଧାକୃଷ୍ଣ ବିଶ୍ୱାସରାୟ, ନୀଳକଣ୍ଠ ସାହୁ, ଶ୍ରୀ ହରିହର ମିଶ୍ର ଏମାନେ ଥିଲେ ଆମ ସମୟର କଥଃ କାହାଣୀର ନାୟକ ଯାହାର ଚର୍ଚ୍ଚା ରାସ୍ତାରେ ବିଦ୍ୟାଳୟରେ ଏପରିକି ମଞ୍ଚ ଉପରେ ଯେଉଁଠି ଶୁଣିବ ସେଇଠି ସେମାନଙ୍କ କଥା। ଶିକ୍ଷାବିତ୍ ଏମାନେ ପଣ୍ଡିତ ଏମାନେ ନେତା ତଥା ସାହିତ୍ୟିକ ଏମାନେ। ଚାନ୍ଦ ଆଙ୍ଗା-ଛାତ୍ର ବତ୍ସଳତା ତଥା ଉତ୍କଳ ସମ୍ମେଳନ ଓଡ଼ିଆ ଓଡ଼ିଆ ପାଇଁ ସ୍ମରଣୀୟ। ଶ୍ରୀ ହରିହର ମିଶ୍ର ପ୍ରଜାବାଣୀ ମାଧ୍ୟମରେ ସାମାଜିକ ସଚେତନତା ତଥା ବିଶ୍ୱାସରାୟବାବୁ ରାଜନୈତିକ ବାର୍ତ୍ତା ବହ ଥିଲେ। ସେମାନେ କିନ୍ତୁ ଆମକୁ ଜହ୍ନ ବା କମ୍ପ୍ୟୁଟର ବିଷୟରେ ଅବା ଟାଟା ବିରଳାର ସ୍ୱପ୍ନ ଦେଖାଉ ନଥିଲେ ବରଂଚ ନିଜ ଭିତରେ ଥିବା କ୍ଷୁଦ୍ର ପ୍ରତିଭାଟିକୁ ଆମକୁ ଚିହ୍ନାଇ ଦେଉଥିଲେ। ଶାସ୍ତି ଦେଉଥିଲେ, ଗାଳି ଗୁଲଜ କରୁଥିଲେ ସତ କିନ୍ତୁ ସେହି ରୁକ୍ଷତା ଭିତରୁ ଶାନ୍ତ ସ୍ୱରରେ ଯେମିତି କହୁଥିଲେ, 'ବାବା ତତେ ମାରିନି - ତୋ ଭିତର ସୈତାନଟିକୁ ମାରିଛି, ଚିହ୍ନାଇ ଦେଇଥିଲେ ଏ ତୋର ସହର ଏହାହିଁ ତାର ସଂସ୍କୃତି ଏହାହିଁ ସାହିତ୍ୟ - ତୁମେ କିଛି କର।

ବୟସ ବଢ଼ିବା ସହ ଆମକୁ ଆକର୍ଷିତ କରିଥିଲା ଆମ ଚର୍ତୁଃଦିଗର ପୃଥିବୀ - ନାକଟି ଡଙ୍ଗର ତଳେ ଥିବା "ବାବାଜି ଆଖଡ଼ାର ଫଳ ବଗିଚା ମାହାଳିଆ ପୁଟର ବଉଳ କୋଳି, ଅବା କାଳିକା ମଂନ୍ଦିର ପାର୍ଶ୍ୱରେ ଥିବା ଆମ୍ବିଳି ଆମ୍ବ ଗଛ - ସ୍କୁଲ ଜୀବନର ସାଥିମେଳରେ ଙ୍କଷି ଆମ୍ବଟିଏ ପାଇଁ କି ଯେ ଆତୁରତା - କେତେ ପଡ଼ା ଉଠା, ଖଣ୍ଡିଆ ଖାବରା - ସବୁ ସୁହାଇ ଥିଲା ଯଦି ହାତ ମୁଠାରେ ପାଉଥିଲୁ ଆମ୍ବଟେ ବା ଖଟା ପିଜୁଳିଟେ। ଅବା ନିସ୍ତୁନି ଗ୍ରୀଷ୍ମ ମଧ୍ୟାହ୍ନରୁ ଘରୁ ମା ବାପାଙ୍କ ଅଲକ୍ଷରେ ପଞ୍ଚାନନ ମନ୍ଦିର ବାରଣ୍ଡାରେ ତିନି ସାହିର ବୁଢ଼ାଦଳଙ୍କ ପାଲି ସକଟା ଖେଳ ଅବା ନକ୍‌ସ ଖେଳ ଟକା ସାର ଭିତରେ କି ସୂକ୍ଷ୍ମ କାରୁକାର୍ଯ୍ୟ - କେଉଁ କାରିଗରର ଉତ୍କୃଷ୍ଟ କଳା, ଜାଣୁ ନଥିଲୁ ତଥାପି ସେମାନଙ୍କ ଆନନ୍ଦ ତଥା ଖେଳ ଜନିତ ହା ହୋଲ୍ଲାରେ ତିନି ସାହି ପ୍ରକଂପିତ ସତେ ଯେପରି ଏ ଖେଳ ଖେଳ ନୁହେଁ - ଦୌପଦିର ଆତ୍ମ ସମ୍ମାନର କଥା। ତା ଭିତରେ ପୁଣି ପୋଖରୀ ହୁଡ଼ାରେ ଭଞ୍ଜ ସାହିତ୍ୟ ଆଲୋଚନା ଶାସ୍ତ୍ର ଆଲୋଚନା। ଆମକୁ ଅବା ଦିନେ ଦିନେ ସେ ମାଳତି, କୁଞ୍ଜ ଲତା ଭିତରୁ ଗଭୀର ଭାବରେ ପ୍ରଭାବିତ କରି ଥିଲା। ସଂପୂର୍ଣ୍ଣ ମନଲୋଭା ସ୍ୱରରେ କ୍ଷଣିକ ପାଇଁ ସ୍ଥିର କରିଦିଏ ଚଞ୍ଚଳ ଗୃହୁଣୀର ମନକୁ ଯେତେବେଳେ ସଂଧ୍ୟାର ସ୍ୱର ସହ, ପାନ ଖିଲଟେ ଖାଇ ସଂଗୀତ ସାଗରେ ଆରଂଭ କରି ଦିଅନ୍ତି ହାରମୋନିୟମ ସହ

'ବୋଲ ବୋଲ୍ ସଜନୀରେ, ସତେକି ଆସିବେ ଫେରି
ସେ ମୁରାରୀ ବଂଶୀଧାରୀ, ସତେକି ଆସିବେ ଫେରିର....

ଆହାଃ କି ଚମତ୍କାର ଗୀତଟେ - ତାପରି ସ୍ୱରଟେ ମଧ ରଖିନାହିଁ। ଘର ନାହିଁ ମନ୍ଦିରରେ ରହଂତି - ମନ୍ଦିରରେ ଖାଆନ୍ତି ରାଜା ବିକ୍ରମଦେବଙ୍କ ଆଗରେ ଗୀତ ବୋଲନ୍ତି - ନା ତାଙ୍କର କେବଳ 'ସଂଗୀତ ସାଗର' - ବାସ୍। ତା ସହିତ ଭୂଷଣ ପାଇକର ଖଂଜଣୀ, ମୁନ୍‌ସୀ/ତଲିଆର ସାପ ନୃତ୍ୟ, ଚନ୍ଦନ ପହିଲମାନ ଛାତିରେ ପଥର ରଖି ପଥର ଗୁଣ୍ଡ କରିବାର ଦୃଶ୍ୟ ଅବା ଅନ୍ୟ କେଉଁ ପଣା ସଂକ୍ରାନ୍ତି ଦିନ ଗଞ୍ଜେଇ ପଣା ପିଇ ହନୁମାନ ମନ୍ଦିର ଆଗରେ ବସ୍ତାଟିଏ ପକାଇ ଦେଖୁଥାଏ। କେତେ ଲୋକ ନାଟ, କୁମ୍ଭାସୁର ବଧ, ପ୍ରହ୍ଲାଦ ନାଟ ଅବା ରାମ ରାବଣ ଯୁଦ୍ଧ। ହଜାର ହଜାର ପିଲା, ବୁଢ଼ା ମଝିରେ ଯେତେବେଳେ ଝାଞ୍ଜ, ମୃଦଙ୍ଗ ଅବା ହାରମୋନିୟମର ତାଳେ ତାଳେ 'ଦ୍ୱାରୀ ଘୋଷଣା କରେ "ବାହାରିଲେ ବୀର ବର - ହସ୍ତେ ଧରି ଧନୁଶର ଆଃ କି ଉନ୍ମାଦ ଭରା ନାଚ ସେ ଆଦିବାସୀମାନଙ୍କର କଳା ମୁହଁରେ, କଳା ରଂଗ ବୋଳା, ଓଠଟି ରଂଗ ତାକୁ ସୁନ୍ଦର ଦିଶିବା ପରି କଳା ଚଷମା ସାଂଗକୁ ରଜା, ମନ୍ତ୍ରୀର ଚିକ୍ ଚାକ୍ ପୋଷାକ - ତା ଭିତିରେ ଭିକାରୀ ଗୁରୁ 'ନିଶି ଗୁରୁ'ର ସଙ୍ଗୀତ ଲହରୀ - ଅବା ଚୈତ ରାତ୍ରିରେ ନିକଟସ୍ଥ ଗାଁ ଗହଳୀରୁ ଯୁବକ ଯୁବତୀମାନେ ବିଭିନ୍ନ ରଙ୍ଗ ବେରଙ୍ଗୀ ପୋଷାକ ଭିତରେ ଲାଉ ତୁମ୍ବାର ବାଜା ବଜାଇ ଗୋଲ ଗୋଲ ହୋଇ ନାଚି ଯାଆନ୍ତି

"ଛେର୍ ବୁଢ଼ି ଛେର, ଲିଆ ଖାଇ ଖାଇ ଛେର୍ - କିମ୍ବା

ଆନିଆ ଦୁନିଆଁ ମୁଠାକେ ଚାଉଳ ଦିଆକିନା
ଦେଲେ ଦିଆ ନଇଲେ ନାଇଁ, ଆମରି ଗାଁକୁ ଯୁ କିନା' —

ଏହି ପରି ନୈଃସ୍ୱର୍ଗୀକ ସୁଷମା, ଏ ଶୀତ ତଥା ଚୀର ଚଞ୍ଚଳ ନଦୀ, ଝରଣା ରାମଗୀରିର ବିଶାଳ ତରୁ ଥବା ଡୁଡୁମା ବାଗ୍ରାର ମଧୁର ସଙ୍ଗୀତ ଯେ ମାଗତୁ ଫୁଁଙ୍କାରୀ ପରି, ବିକ୍ରମ ଦେବଙ୍କ ପରି, ବିଦ୍ୟାଧର ସିଂହ ଦେବଙ୍କ ପରି ଥବା ଆମର ନମସ୍ୟ ଅଗ୍ରଜମାନଙ୍କ ପରି ଆମକୁ ମଧ ପ୍ରଭାବିତ କରିଥିଲା। ଭାବୁକ ପ୍ରାଣଟିଏ ନିମିଷକେ ପାଇଁ ଉଦ୍‌ବେଳିତ ହେଉଥିଲା - ସଂଧାର ଜଗନ୍ନାଥ ସାଗର ଦୃଶ୍ୟ ଦେଖି ଥବା ନିକଟସ୍ଥ ବନର ନାଲି ରାସ୍ତା ତ୍‌ଢ଼େ ତଢ଼େ ଫୁଟିଥିବା 'କୁନ୍ଦ ଫୁଲ' ଦେଖି।

ଆମର ସାହାସ ନଥିଲା - ଆମର କୃତି ଆମେ ନେଇ ଆମ ବର୍ଣ୍ଣିତ ପ୍ରଖ୍ୟାତମାନଙ୍କ ଆଗରେ ଦେଖାଇବୁ - ପଢ଼ିବା, ବେଳୁ କିଛି ବନ୍ଧୁ ଏ ଦିଗରେ ମିଳିତ ଉଦ୍ୟମ କଲୁ - ଉଦୟରାଗ ବୋଲି ଗୋଟିଏ ପାଂଠଚକ୍ର କଲୁ ବଂନ୍ଧୁ ଶୁଭେନ୍ଦୁ ମୁଣ୍ଡ, ସତ୍ୟ ମିଶ୍ର, ମୁଁ କୃଷ୍ଣାବେଣୀ, ପଞ୍ଚାନନ ବାବୁ - ସରଳ ମଣିଷଟିଏ ପାଇଲୁ ରାମନାଥ ବାବୁଙ୍କୁ କାହିଁକି କେଜାଣି ତାଙ୍କ ଶାନ୍ତ କୋମଳ ତଥା ସ୍ନେହି ମନଟେ ଦେଖି ତାଙ୍କୁ ଭୟ ନକରି ମନକଥା କହିଲୁ - କାଳେ କେହି ଜାଣିବେ - ସହର ଉପାନ୍ତରେ ନୂଆଁ ହୋଇ ଗଢ଼ା ହୋଇଥିବା 'ଶ୍ରୀ ଅରବିନ୍ଦ ଆଶ୍ରମ' ହିଁ ଆମ ବୈଠକ ପାଇଁ ଉପଯୁକ୍ତ ସ୍ଥାନ ଥିଲା। ତାପରେ ମିଳିତ ଚେଷ୍ଟାରେ ଉଦୟରାଗ ପତ୍ରିକା ଅଣୁଲେଖା ପରି କୁନୀ ପତ୍ରିକା - ଯାହା ଓଡ଼ିଶାର ପ୍ରଥମ ମିନି - ପତ୍ରିକା ଥିଲା - ତାପରେ ତାପରେ ଅନେକ ଲେଖାଟିଏ ବାହାରିଲେ ଖୁସି ଲାଗୁଥିଲା। ହଠାତ କିନ୍ତୁ ଆମର ଆୟତନ ବଢ଼ିଗଲା - ଆକାଶ ବାଣୀ ଖୋଲିଥାଏ ଗପଟିଏ ପଠାଇ ଦେଉ - କିନ୍ତୁ ଚିହ୍ନରା ଗ୍ରାହକ ପରି ପାଇଥିଲୁ ସର୍ବଶ୍ରୀ ସୁରେନ୍ ମହାନ୍ତି, ଉମାପଣ୍ଡା, ନବରାଜ, କୁମାର ମହାନ୍ତି, ସତ୍ୟ ନାରାୟଣ ପଣ୍ଡା ଜୟନ୍ତ ଦାସ, ରାମ ତ୍ରିପାଠୀ ଏମାନଙ୍କୁ ଆମ ଭିତରେ ସାମିଲ କଲେ ଲମ୍ବୋଦର ଭାଇନା - ସ୍ୱଭାବ ସୁଲଭ ଭଂଗୀରେ କହିଲେ "ଆଞ୍ଚା ଗୋଟିଏ ସାହିତ୍ୟ ଅନୁଷ୍ଠାନ ଗଢ଼ିବା - ଗଢ଼ାହେଲା ଜୟପୁର ସାହିତ୍ୟ ପରିଷଦ' ପ୍ରକାଶିତ ହେଲା 'କୋରାପୁଟ' ପତ୍ରିକା ଅଧିବେଶନ ହେଲା ଜିଲ୍ଲାର ଅନେକ ସ୍ଥାନରେ ଭଲ ଲାଗୁଥାଏ ଏମାନଙ୍କ ଗହଣରେ ରହି କିଛି ଶିଖିବା କିଛି ଲେଖିବାର ପ୍ରେରଣା ମିଳୁଥାଏ। ଯୋଡ଼ି ହେଲେ କାଳୀଭାଇନା, ନଳିନୀଭାଇନା ସାହିତ୍ୟ ଚାଷ କିଛି କିଛି ହେଲା, ମଜା ଲାଗୁଥାଏ।

ଏ ଭିତରେ କୈଶର ଚାଲିଗଲା। ହଠାତ୍ ଦିନେ ଉପଲବ୍ଧୀ କଲୁ ଆମକୁ ମଧ କେହି କେହି ଚିହ୍ନନ୍ତି। କ୍ଷୁଦ୍ର ସହର - କ୍ଷୁଦ୍ର ପରିସର ଭିତରେ ଗତିକଲା ବେଳକୁ ଲାଗୁଥାଏ ସତେ ଯେମିତି ଜୟପୁର ତାର ପ୍ରତ୍ୟେକ ରାସ୍ତା, ପ୍ରତ୍ୟେକ ଦୋକାନ ପ୍ରତ୍ୟେକ ଯିବା ଆସିବା ଲୋକ ସମସ୍ତେ ଯେମିତି ମୋର, ନିଜର ଆତ୍ମୀୟ। ପ୍ରତ୍ୟେକଟି ମୁହଁ ପରିଚିତ ଲାଗେ, ହେଉ ବା ସେ ଓଡ଼ିଆ, ତେଲୁଗୁ ଅବା ମାରବାଡ଼ି ଅବା ଖୋଦ ରାଜା —

ଡାକୁ ଥିଲୁ କାହାକୁ ଦାଦା, କାହାକୁ ଭାଇନା, କାହାକୁ ସାର୍ ବୋଲି। ସେହି ଆତ୍ମୀୟତା ଭିତରେ ସୂର୍ଯ୍ୟର ଶେଷ କିରଣରେ ଆହୁରି ରଙ୍ଗୀନ ଦେଖାଯାଉଥିଲା ସୂର୍ଯ୍ୟ ମହଲ, ଓ ତାର ଚର୍ତୁଃପାର୍ଶ୍ୱ, ସେ ରଙ୍ଗରେ ହୋଲି ଖେଳୁଥିଲା ଆମର ପିଲା ଦିନର ସ୍ୱପ୍ନ, ସେ ଅନୁପମ କୃଷ୍ଣ ଚୂଡ଼ାର ଦୃଶ୍ୟ - ତା ସହିତ ଜଡ଼ିତ ଘଟଣା ବ୍ୟକ୍ତି ଗଣ ସବୁ ଯେମିତି ଫେଣ୍ଟା ଫେଣ୍ଟି ହୋଇ ମୋରି ଭିତରକୁ ଫେରି ଆସୁଥିଲେ - ମୋର ଅତୀତର ସ୍ୱପ୍ନ ହୋଇ।

କିନ୍ତୁ ଆଜି। ଏ ଜୟପୁର ଅଛି। ସେ ସ୍ମୃତି ମଧ ଅଛି କିନ୍ତୁ ଯଦି ନାହିଁ - ଏକାନ୍ତ ଭାବଟା ନାହିଁ। ସତେ ଯେମିତି ଆତ୍ମୀୟ ଭାବଟା ଚିମିନିର ଧୂଆଁପରି କୁଆଡ଼େ ମିଳାଇ ଯାଇଛି। ଏ ଧୂମ୍ରାଭ ପରିବେଶ ମଧରେ ଏକାନ୍ତ ମଣିଷଟିଏ ଯିମିତି ଚିହ୍ନରା ଚିହ୍ନରା ଆଖି ନେଇ ଖୋଜୁଛି; ସତରେ ତ ଏଇଠି ଗୋଟିଏ ମସ୍ତବଡ଼ ତୋଟାଟେ ଥିଲା....... ମେଘମାଳ ତୋଟା ??

● ରାଜୁ ସାହି, ଜୟପୁର।

# ନାଟ୍ୟକାର ବଳରାମ ମିଶ୍ର

**ନଳିନୀ ରଞ୍ଜନ ମିଶ୍ର**

ଓଡ଼ିଶାର ଜୀବନ କଳାର ଜୀବନ। ସଙ୍ଗୀତ, ସାହିତ୍ୟ, ନୃତ୍ୟ, କଳା, ମଞ୍ଚ ପ୍ରତି ସେ ସବୁବେଳେ ଯୁକ୍ତସ୍ପୃହ। ନିଜକୁ ପ୍ରକାଶିତ, ପ୍ରକଟିତ କରିବାର ସାଧନାର ଫଳ ତା' ମାଟିରେ ଛନ୍ଦେ ଛନ୍ଦେ ଦେଖିବାକୁ ମିଳିଥାଏ।

ଆଉ ସେଇଥିପାଇଁ ସେ ନାଟକ-ବ୍ୟାକୁଳ। ମଞ୍ଚ ତା'ର ସାର୍ବଜନୀନ। କେତେବେଳେ ଓଡ଼ିଶାର ମଞ୍ଚ-ରସ ବିଦଗ୍ଧତ କେତେବେଳେ ଲୋକପ୍ରିୟ ଏବଂ ସାର୍ବଜନୀନ।

୧୯୫୦ ମସିହା ବେଳକୁ ମଞ୍ଚରେ ରସ-ବୈଦଗ୍ଧ୍ୟ ମ୍ଳାନ ପଡ଼ି ଆସିଲା। ଦର୍ଶକ ଏକ ନୂତନ ସ୍ୱାଦର ଅପେକ୍ଷାରେ ଥିଲା। ଓଡ଼ିଶା ଥିଏଟର୍ସ, ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍ ସାଙ୍ଗକୁ ପ୍ରଥମେ 'ଭାରତୀ' ଏବଂ ପରେ 'ଅନ୍ନପୂର୍ଣ୍ଣା ବି' ସେଇଥିପାଇଁ ଆତ୍ମପ୍ରକାଶ କରିସାରିଥିଲେ। ନୂତନ ନାଟକ ପାଇଁ ନୂତନ ନାଟ୍ୟକାରଙ୍କୁ ସେ ସମୟର ରଙ୍ଗମଞ୍ଚ ଚାହିଁ ରହିଥିଲା ଆଶାୟୀ ଆଖିରେ। ଦର୍ଶକ ଖୋଜୁଥିଲା ତା' ଘରର କଥା, ନିତି ଦିନିଆ ଜୀବନର କଥା କଳାତ୍ମକ ଭାବରେ, ରୂପ, ରସ, ରଙ୍ଗ ବୋଳା ହୋଇ ମଞ୍ଚ ଉପରକୁ ଆସୁ।

ତତ୍କାଳୀନ ସମୟର ଦାବୀ, ଆବେଗ-ଆବେଦନକୁ ଯେଉଁ ସମ୍ବେଦନଶୀଳ ସ୍ରଷ୍ଟାମାନେ ଶୁଣି ପାରିଥିଲେ ସେମାନେ ହେଲେ ନାଟ୍ୟକାର ଶ୍ରୀ ରାମଚନ୍ଦ୍ର ମିଶ୍ର, ଭଞ୍ଜ କିଶୋର ପଟ୍ଟନାୟକ, ଗୋପାଳ ଛୋଟରାୟ, କମଳ ଲୋଚନ ମହାନ୍ତି, ଧନେଶ୍ୱର ପଟ୍ଟନାୟକ, କାର୍ତ୍ତିକ କୁମାର ଘୋଷ, ଅଦ୍ୱୈତ ଚନ୍ଦ୍ର ମହାନ୍ତି, ଉଦୟ ନାଥ ମିଶ୍ର, ପ୍ରାଣବନ୍ଧୁ କର, ସୁରେନ୍ ମହାନ୍ତି, ନରସିଂହ ମହାପାତ୍ର, ଭୁବନେଶ୍ୱର ମହାପାତ୍ର, ବ୍ୟୋମକେଶ ତ୍ରିପାଠୀ, ଯଦୁନାଥ ଦାସ ମହାପାତ୍ର, ନୀଳକଣ୍ଠ ମିଶ୍ର, ବିଜୟ ମିଶ୍ର, ରତ୍ନାକର ଚଇନି, ରମେଶ ଚନ୍ଦ୍ର ପାଣିଗ୍ରାହୀ, କାର୍ତ୍ତିକ ଚନ୍ଦ୍ର ରଥ, ରଜତ କୁମାର କର, ବସନ୍ତ କୁମାର ମହାପାତ୍ର, ପ୍ରଫୁଲ୍ଲ ରଥ, ଆଲୋଚ୍ୟ ନାଟ୍ୟକାର ବଳରାମ ମିଶ୍ର ଏବଂ ଅନ୍ୟମାନେ।

ଯେ କୌଣସି 'ମଞ୍ଚ' ପଛରେ ଏକ ସୁନ୍ଦର, ବଳିଷ୍ଠ ପ୍ରବାହ ଥାଏ, ପରମ୍ପରା ଥାଏ। ନାଟ୍ୟକାର ବଳରାମ ମିଶ୍ରଙ୍କ ପାଇଁ ମଧ୍ୟ ଏହା ସତ୍ୟ। ସମସାମୟିକ ସମଧର୍ମା ଏବଂ ପରବର୍ତ୍ତୀ ସ୍ରଷ୍ଟାମାନେ ସେହି ପ୍ରବାହରେ ବଳ ଦିଅନ୍ତି। ରଙ୍ଗ ମଞ୍ଚର ଆଙ୍ଗିକ ଏବଂ ଆତ୍ମିକ ରୂପ ସେଇଥିରେ ବର୍ଣ୍ଣଯୁକ୍ତ ହୁଏ। ଜୀବନରେ ସୌନ୍ଦର୍ଯ୍ୟ ଏବଂ ଆଦର୍ଶର ପ୍ରତିଷ୍ଠା ହେଉ - ଏଇ ଇଚ୍ଛା ନାଟ୍ୟକାରଙ୍କର ଥିବାରୁ ରଙ୍ଗମଞ୍ଚ ବାସ୍ତବତାର ଭୂମି ଉପରେ ଠିଆ ହୋଇଥିବା ଏକ ଆବେଗମୟ ସ୍ୱପ୍ନର ଜଗତ ହୋଇ ଦର୍ଶକଙ୍କୁ ଅହରହ ଟାଣୁଥାଏ। ଟାଣୁଥାଏ ଏଇଥିପାଇଁ ଯେ ମଞ୍ଚ ତାକୁ ଜୀବନର ଛୋଟ ଛୋଟ ଦୁର୍ବଳତା ବିଷୟରେ ସଚେତନ କରି ଦେଉଥାଏ, ସଚେତନ କରିଦେଉଥାଏ ଦୁର୍ବଳତା ବିରୋଧରେ ଲଢ଼ିବାର ବଳ ଦେଇ। ମଞ୍ଚ ଜରିଆରେ ନାଟ୍ୟକାର ଛୁଇଁ ଦେଉ ଥାଏ ମଣିଷର ଛାତିକୁ, ମଣିଷର ଅସଲ ରୂପକୁ।

ଏ ସ୍ପର୍ଶ ଅନୁଭବ କରି ଦର୍ଶକ, ଜାତି କୃତଜ୍ଞତାରେ ତେଣୁ ଏହିଭଳି କହିଥାଏ; '' ଶଙ୍ଖ-ମହୁରୀ ଏକ ସାମାଜିକ ସମସ୍ୟା ବହୁଳ ନାଟକ। ନାଟ୍ୟକାର ଦେଖାଇ ଦେଇଛନ୍ତି - ମଣିଷ ଗୋଟାଏ ଜାତି*** ଏହା ବ୍ୟତୀତ ଆଉ ଗୋଟିଏ କଥା ସେ ଏଥିରେ ପ୍ରତିପାଦନ କରିଛନ୍ତି ଯେ ମା'ର ମମତା ଆଗରେ ଜାତି, ଧର୍ମ, ସମାଜ ସବୁକିଛି ହାର ମାନେ। *** ନାଟ୍ୟକାର ଶ୍ରୀ ବଳରାମ ମିଶ୍ର ଏ କ୍ଷେତ୍ରରେ ନୂତନ ନୁହନ୍ତି। ଏଥି ପୂର୍ବରୁ ତାଙ୍କର ଲିଖିତ 'ବନ୍ଦିତା' ଜନତା ରଙ୍ଗମଞ୍ଚରେ କଳାକାରଙ୍କ ଦ୍ୱାରା ବହୁ ରାତି ଧରି ଅଭିନୀତ ହୋଇ ଯାଇଛି।''

ମାତୃଭୂମିରେ ୯-୭-୬୧ରେ ଏହି ଯେଉଁ ମନ୍ତବ୍ୟ ପ୍ରକାଶ ପାଇଛି, ସେହିପରି ମନ୍ତବ୍ୟ ମଧ୍ୟ 'ପ୍ରଜାତନ୍ତ୍ର' 'ଗଣତନ୍ତ୍ର' ଏବଂ 'ସମାଜ'ରେ ପ୍ରକାଶ ପାଇଛି। ରାତି ରାତି ଧରି ନାଟ୍ୟକାରଙ୍କର ନାଟକକୁ ଦେଖୁଥିବା ଜନତା - ଦରବାର ସଚେତନ ନ ହେଲେ 'ଚେତନା'ର କଥା, ଦୁର୍ବଳତାଠାରୁ ଦୂରକୁ ଯିବାର କଥା ନାଟ୍ୟକାର କହିପାରନ୍ତେକି ?

ସେ ସମୟର 'ପ୍ରଜାତନ୍ତ୍ର'ରେ ନାଟ୍ୟକାର ନିଜ ନାଟକଟିରେ 'ନାଟକୀୟ ଉତ୍କଣ୍ଠା ଓ ସଙ୍ଘର୍ଷରେ ମାତ୍ରାଜ୍ଞାନ ଯଥାସମ୍ଭବ ରକ୍ଷା' କରି ପାରିଛନ୍ତି ବୋଲି ଉଲ୍ଲେଖ କରାଯାଇଛି। ଏହା ପ୍ରମାଣିତ କରୁଛି, ନାଟ୍ୟକାର, ନାଟକ, ମଞ୍ଚ ଓ ଜନତା - ଦରବାରର ଯୋଗସୂତ୍ର କଥା।

ସମାଜ ଭିତରେ ଥିବା ଦୋଷ - ଦୁର୍ବଳତାକୁ ନାଟ୍ୟକାର ରଙ୍ଗମଞ୍ଚ ଉପରେ ଦେଖାଇ ପାରୁଛନ୍ତି, ଜନତା ଦେଖି ପାରୁଛନ୍ତି। ମୁଗ୍ଧ, କୃତଜ୍ଞ ଜନତା ପୁଣି 'ସମାଜ' (୫-୭-୬୧) ଜରିଆରେ ନାଟ୍ୟକାରଙ୍କୁ 'ତରୁଣ ଲେଖକ ଶ୍ରଦ୍ଧେୟ ବଳରାମ ବାବୁ' ବୋଲି କହି ତାଙ୍କଠାରୁ ଆହୁରି ବେଶୀ ଦୃଢ଼ତା, ଆହୁରି ବେଶୀ ସାହସ ଆଶା କରୁଛି। ସାଂପ୍ରଦାୟିକତା ବିରୋଧରେ ଲଢ଼ିବାର ଇଚ୍ଛା ଯୋଗାଇଛନ୍ତି ନାଟ୍ୟକାର ଏବଂ ଓଡ଼ିଶାର ଜନତା ତା'କୁ ସାଦରେ ଗ୍ରହଣ କରିଛି। ୧୯୬୧ ବେଳର ଏ ଅବସ୍ଥା ପୂର୍ବରୁ ୧୯୫୯ରେ ରଚିତ 'ବନ୍ଦିତା' ନାଟକ ନାଟ୍ୟକାର ବଳରାମଙ୍କୁ ପ୍ରତିଷ୍ଠା ଦେଇ ସାରିଥିଲା। ସେ ଯେ ଜଣେ ନୂତନ ନାଟ୍ୟକାର, ଏ ବିଷୟରେ ସେ ସଚେତନ ଥିଲେ। ତା' ସହିତ ତାଙ୍କର ଆଶା - ଆକାଂକ୍ଷାକୁ, ପରିକଳ୍ପନାକୁ 'ନାଟ୍ୟରୂପରେ ପରିବେଷଣ କରିବା କ୍ଷେତ୍ରରେ କୁଶଳୀ କଳାକାର ଶ୍ରୀ ପ୍ରିୟନାଥ ମିଶ୍ର (ପିର)ଙ୍କର ସୁଚିନ୍ତିତ ନିର୍ଦ୍ଦେଶନା, ସଙ୍ଗୀତ-ନାଟକ ଏକାଡେମୀ ପୁରସ୍କାର ପ୍ରାପ୍ତ ଶ୍ରେଷ୍ଠ ଅଭିନେତା ଓ ନିର୍ଦ୍ଦେଶକ ବାବିଭାଇଙ୍କର ବହୁ ମୂଲ୍ୟବାନ ଉପଦେଶ,

ଅନ୍ନପୂର୍ଣ୍ଣା 'ବି'ଗ୍ରୁପର ସତ୍ତ୍ୱାଧିକାରୀ ଶ୍ରୀଯୁକ୍ତ ଲିଙ୍ଗରାଜ ନନ୍ଦଙ୍କଠାରେ' ସେ ଚିର ଋଣୀ ବୋଲି 'ଶଙ୍ଖ ମହୁରୀ' ନାଟକ ପୁସ୍ତକର ପ୍ରାରମ୍ଭରେ ନମ୍ର-ସ୍ୱୀକାର ନେଇଛନ୍ତି।

'ବନ୍ଦିତା' ନାଟକର ସଫଳତା ପରେ ବି ନାଟ୍ୟକାର ନମ୍ର ଥିଲେ। 'ବନ୍ଦିତା' ସମ୍ପର୍କରେ 'ସମାଜ' (୧୦-୧୧-୫୯)ରେ ଉଲ୍ଲେଖ ହୋଇଛି; ''ବନ୍ଦିତା ନାଟକର ବିଷୟବସ୍ତୁ ଓ ରଚନା ଉଚ୍ଚକୋଟୀର। ଏଥିରେ ଚରିତ୍ରଗୁଡ଼ିକର ବୈଶିଷ୍ଟ୍ୟ ରହିଛି।''

'ବନ୍ଦିତା'ରେ ନାଟ୍ୟକାର ତେଲୁଗୁ ଓ ଓଡ଼ିଆ ଭାଷାର ମିଶ୍ରିତ କେତୋଟି ଶବ୍ଦ ପ୍ରୟୋଗ କରି ଯେଉଁ କେତୋଟି ସଂଳାପ ସୃଷ୍ଟି କରିଛନ୍ତି, ତାହା ସେ ସମୟରେ ଏକ ଅଭିନବ, ଦୁଃସାହସିକ ଉଦ୍ୟମ ଥିଲା ନିଶ୍ଚୟ। ରାୟଗଡ଼ା ମାଟିରୁ ଏ ଶବ୍ଦ ସବୁ ସେ ନେଇଛନ୍ତି। କଳା ଓ ସଂସ୍କୃତିପ୍ରେମୀ ଓଡ଼ିଆଦର୍ଶକ ଏହାକୁ ସାଦରେ ଉପଭୋଗ କରିପାରିଥିଲେ ସେହି ସମୟରେ। ଏ ସଂଳାପ-ସଂଯୋଜନା ନାଟକର ସଫଳତା ହିଁ ଆଣି ଦେଇଛି ବୋଲି କୁହାଯାଇପାରେ। ସମାଲୋଚକ ଡକ୍‌ଟର ହେମନ୍ତ କୁମାର ଦାସଙ୍କ ଭାଷାରେ ''ଟଇଷ୍ଟିପୁ ଚରିତ୍ର ଭେଙ୍କଟ ରାଓ ନାଟ୍ୟକାରଙ୍କର ଏକ ସଫଳ ସୃଷ୍ଟି। ସଂଳାପ ଯୋଜନା ଉଚ୍ଚ କୋଟୀର।'' (ଓଡ଼ିଆ ନାଟ୍ୟ ସାହିତ୍ୟର ବିକାଶଧାରା, ପୃ. ୨୦୩) ଜୀବନରେ ବ୍ୟସନ ବ୍ୟକ୍ତିର ଅଧଃପତନ ଆଣିଥାଏ ବୋଲି ନାଟକରେ ସ୍ପଷ୍ଟ ସୂଚନା ରହିଛି। ତ୍ୟାଗ, ଆଦର୍ଶ, ନୈତିକତା, ସ୍ୱର୍ଗୀୟ ପ୍ରେମ, ଆଭିଜାତ୍ୟ ଓ ଦାରିଦ୍ର୍ୟର ଦ୍ୱନ୍ଦ୍ୱର ଚିତ୍ର ନାଟକଟିରେ ମାର୍ମିକ ଭାବରେ ଚିତ୍ରିତ ହୋଇଛି।

୧୯୬୦ର ନାଟକ 'ଜୀବନର ଝଡ଼'ରେ ଉଚ୍ଛୃଙ୍ଖଳତା, ଲାଳସା ଉପରେ ବିଜୟଲାଭ ପାଇଁ ଏକ ଆହ୍ୱାନ ନାଟ୍ୟକାର ଶୁଣାଇଛନ୍ତି।

ପୂର୍ବରୁ କବିଚନ୍ଦ୍ର କାଳିଚରଣଙ୍କର ନାଟକରେ ଲୋକଶିକ୍ଷା ଥିଲା ମୂଳ ଉଦ୍ଦେଶ୍ୟ। ପରବର୍ତ୍ତୀ ସମୟରେ ମନୋରଂଜନର ନୂତନ ସ୍ୱାଦ ଚାଖିବାକୁ ଜନତା ଆଗ୍ରହ ପ୍ରକାଶ କରିବାର ସୂଚନା ପୂର୍ବରୁ ଦିଆଯାଇଛି। ଏହା ସତ୍ତ୍ୱେ ଶସ୍ତା ମନୋରଞ୍ଜନ ପାଇଁ କଳା-ପ୍ରାଣ ପ୍ରସ୍ତୁତ ହୋଇନି। ମନୋରଞ୍ଜନ ଜରିଆରେ ଜୀବନର ଉଚ୍ଚତର ମୂଲ୍ୟବୋଧ ଜାଗ୍ରତ କରିବାର ପରମ୍ପରା ବଳରାମ ମିଶ୍ରଙ୍କ ବେଳକୁ ଆରମ୍ଭ ହୋଇ ଯାଇଥିଲା। ନାଟକରେ 'ପ୍ରୟୋଗାତ୍ମକ ପଦ୍ଧତି' ମଧ୍ୟ ଆରମ୍ଭ ହୋଇ ଯାଇଥିଲା। ସମସାମୟିକ ନାଟକଗୁଡ଼ିକ ଅନୁଧ୍ୟାନ କଲେ ସେ ସମୟର ପ୍ରାଣ-ସ୍ପନ୍ଦନ, କଳା-ସ୍ପନ୍ଦନ ଶୁଣିହୁଏ। ଏଇଥିପାଇଁ ବୋଧହୁଏ ବଳରାମ ମିଶ୍ରଙ୍କର ଚରିତ୍ରଗୁଡ଼ିକ ବେଳେ ବେଳେ 'ବାସ୍ତବବୁଦ୍ଧି'ଠାରୁ ଦୂରରେ ରହି ଫୁଟିବାକୁ ଚେଷ୍ଟା କରିଛନ୍ତି।

କୋରାପୁଟ ମାଟିରେ ନାଟ୍ୟକାର ଆଦିବାସୀମାନଙ୍କର ଜୀବନ ଧାରାକୁ ପ୍ରତ୍ୟକ୍ଷ ଭାବରେ ଦେଖିପାରିଥିଲେ, ସେମାନଙ୍କର ହସ-କାନ୍ଦକୁ ସେଇଥିପାଇଁ ବୁଝି ପାରିଥିଲେ। ଔପନ୍ୟାସିକ ଶ୍ରୀ ଗୋପୀନାଥ ମହାନ୍ତିଙ୍କର ଉପନ୍ୟାସ 'ପରଜା' ପ୍ରକାଶିତ ହୋଇ ସାରିଥିଲା। 'ଡୁମା' (୧୯୬୨) ନାଟକ ଆଦିବାସୀ ଜୀବନରେ ସାହୁକାରର ଚକ୍ରାନ୍ତ ଫଳରେ ଦାସୁରୁ କନ୍ଧର ଆଶା, ଆକାଂକ୍ଷା, ଆଶ୍ରୟ, ଭରସା ଭାଙ୍ଗିପଡ଼ିବାର ଚିତ୍ର ଦିଏ। ଅବଶ୍ୟ ସମ୍ପାରୀ ସହିତ ଦାସୁରୁର ପୁନର୍ମିଳନ ନାଟକୀୟତା ଆଣିଛି ବୋଲି ସମାଲୋଚକମାନେ କହନ୍ତି, ଯାହା 'ଥିଏଟରିକାଲ୍' ଦୋଷଯୁକ୍ତ, ତଥାପି ଆଦର୍ଶ ଆଉ ଆଶାର ନାଟ୍ୟକାର ବଳରାମଙ୍କର ଏହା ମନର ଆକାଂକ୍ଷା ବୋଲି ଧରି ନିଆଯିବ। ନାଟ୍ୟକାର ସ୍ୱପ୍ନ ଦେଖିବା, ସୁନ୍ଦର ଚିତ୍ର ତିଆରି କରିବା ଏକ ଦୋଷାବହ କାର୍ଯ୍ୟତ ନୁହେଁ। ନାଟ୍ୟକାରଙ୍କର ଏକ 'ସନ୍ଦେଶ' ରହିବା କଥା। ସେତେବେଳେ ସମସ୍ତ ନାଟ୍ୟକାରଙ୍କର ସୃଷ୍ଟିରେ 'ସନ୍ଦେଶ' ରହିଥିଲା। ସାହିତ୍ୟ ପରା ସାଥିରେ ନିଏ।

ଦେଶପ୍ରେମ ମଣିଷର ଏକ ସ୍ୱାଭାବିକ ଆବେଗ। ଚୀନ ଆକ୍ରମଣ କରିଛି ଭାରତକୁ। ସମଗ୍ର ଭାରତରେ ସେତେବେଳକୁ ଚିତ୍କାରୀର ଥାଳି ବି ଥରି ଉଠିଛି। କିନ୍ତୁ ଦେଶଦ୍ରୋହୀ ନ ଥିଲେ ଦେଶ ପ୍ରେମ ବୋଧହୁଏ ଅଂକୁରିତ, ବର୍ଦ୍ଧିତ, ବିସ୍ତୃତ ହୋଇ ପାରେ ନାହିଁ। ଏଣୁ ଯୁଦ୍ଧର ବିଭୀଷିକା, ତ୍ୟାଗ, ସ୍ୱାର୍ଥପରତା, ଚକ୍ରାନ୍ତ, ଦେଶ ଦ୍ରୋହର ଘଟଣା ଏବଂ ଚରିତ୍ରକୁ ନେଇ ସୃଷ୍ଟି ହୋଇଛି 'ସଂକଳ୍ପ' ନାଟକ ୧୯୬୩ରେ। ଏହି ନାଟକର ''ପରିକଳ୍ପନା ପଛରେ ଥିଲା କଟକର 'ଜୟଦୁର୍ଗା କଳା ଭାରତୀ' ଏବଂ ପୁରୀରେ 'ରେଲୱେ ରିକ୍ରେସନ କ୍ଲବ୍'ର ଉଦ୍ୟୋକ୍ତା, କର୍ମକର୍ତ୍ତା, ହିତାକାଂକ୍ଷୀ ଓ ପୃଷ୍ଠପୋଷକମାନଙ୍କର ଅଦମ୍ୟ ଉତ୍ସାହ, ପ୍ରେରଣା ଏବଂ ଓଡ଼ିଶାର ବହୁ ବିଶିଷ୍ଟ ବିଶିଷ୍ଟ କଳାକାରଙ୍କର ସହଯୋଗିତା।'' ବୋଲି କୃତଜ୍ଞ ଲେଖକ ନାଟକ ପୁସ୍ତକର ଦ୍ୱିତୀୟ ମୁଦ୍ରଣ ବେଳେ (୧୯୬୭) ନିଃସଂକୋଚରେ ପ୍ରକାଶ କରିଛନ୍ତି। ଏହି ନାଟକଟି ପ୍ରଥମେ ଅନ୍ନପୂର୍ଣ୍ଣା 'ବି' ରଙ୍ଗମଞ୍ଚ, କଟକ ଏବଂ ପରେ ଅନ୍ନପୂର୍ଣ୍ଣା 'ଏ' ରଙ୍ଗମଞ୍ଚ, ପୁରୀରେ ମଞ୍ଚସ୍ଥ ହୋଇଥିଲା।

ରଙ୍ଗମଞ୍ଚ ପାଇଁ ନାଟକ ଲେଖୁଥିଲେ ନାଟ୍ୟକାର। ତଥାପି ମଞ୍ଚକୁ ଚାହିଁ ଲେଖିବା ଅପେକ୍ଷା ଲୋକ- ରୁଚି, ଲୋକ- ସମୃଦ୍ଧି ପାଇଁ ସେ ଲେଖୁଥିବା ସ୍ପଷ୍ଟ ହୋଇ ଯାଏ ତାଙ୍କ ନାଟକଗୁଡ଼ିକ ଅନୁଧ୍ୟାନ କଲେ। ମଞ୍ଚ ଯେମିତି ତାଙ୍କର ପ୍ରଥମ ପ୍ରୟୋଜନ ନଥିଲା, ପ୍ରଥମ ପ୍ରୟୋଜନ ଥିଲା ଜନତା - ଦରବାର। କଥାବସ୍ତୁ ରଚନା, ସଂଳାପ ସଂଯୋଜନା ଆଦିରେ ପାରମ୍ପରିକତାକୁ ସ୍ୱୀକାର କରୁଥିଲେ ବି ତ୍ୟାଗ, ପ୍ରୀତି, ଜାତୀୟ ସଂହତି, ଜନ୍ମଭୂମି ପ୍ରତି ମମତା, ସତ୍ୟ, ସାହସ ପ୍ରତି ନିଷ୍ଠା ପ୍ରତିଷ୍ଠା କରିବା ତାଙ୍କର ମୂଳ ଲକ୍ଷ୍ୟ ଥିଲା ବୋଲି ସ୍ପଷ୍ଟ ପ୍ରତୀତ ହୁଏ। କଳ୍ପନା-ବିଳାସ ନୁହେ, ବାସ୍ତବ ଜୀବନର ସଂଘର୍ଷରୁ ଜାତ ଦୃଢ଼ ଚରିତ୍ରବଳ। ଯେମିତି ତାଙ୍କର ମୂଳ ସନ୍ଦେଶ ଥିଲା।

ଦୁଇ ବିପରୀତ ସ୍ୱଭାବ ସଙ୍ଘର୍ଷ ସୃଷ୍ଟିର କାରଣ ହୋଇଥାଏ। ସଂସାରରେ ବିଷ ଅଛି, ଅମୃତ ବି ଅଛି। ବଳରାମ ମିଶ୍ରଙ୍କର ନାଟକ 'ବିଷ-ପୀୟୂଷ' (୧୯୬୫)ରେ ଚନ୍ଦନା ଏବଂ ଚମ୍ପା ଦୁଇ ବିପରୀତ ଧର୍ମୀ ଚରିତ୍ର। ଜଣେ ବିଷ ହେଲେ ଅନ୍ୟ ଜଣେ ପୀୟୂଷ। ଦେବେନ୍ଦ୍ର ଚରିତ୍ରରେ ନିଜ ସ୍ତ୍ରୀ ଏବଂ ଭାଇ ପ୍ରତି ସନ୍ଦେହର ବିଷ ଏବଂ ସେଇଥିରୁ ଯେଉଁ ବିଷମୟ ପରିସ୍ଥିତିର ସୃଷ୍ଟି ହୋଇଛି, ସେଇଥିରେ ନାଟ୍ୟକାର ସମାଜକୁ ଯେମିତି ସଚେତନ କରିବାକୁ ଚେଷ୍ଟା କରିଛନ୍ତି। ଏହି ଚେଷ୍ଟା ସବୁ ଯେମିତି ତାଙ୍କୁ ଆଚ୍ଛନ୍ନ କରି ରଖିଥିଲା। ଏଣୁ ଚରିତ୍ର ଏବଂ ଘଟଣାର ପୁନରାବୃତ୍ତି ତାଙ୍କ ନାଟକଗୁଡ଼ିକୁ କେବଳ ଗୋଟିଏ

ଧାରାର ନାଟକ କରି ଦେଉଛି ବୋଲି ସେ ସ୍ୱୟଂ ଜାଣି ପାରୁ ନଥିଲେ ବୋଧହୁଏ। ତଥାପି ସାମାଜିକ ସମସ୍ୟାର ନାଟକଗୁଡ଼ିକ ମଧ୍ୟରେ 'ବିଷ-ପୀୟୂଷ'ର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି। ରୂପର ସୌନ୍ଦର୍ଯ୍ୟ ନୁହେଁ ହୃଦୟର ସୌନ୍ଦର୍ଯ୍ୟ ହିଁ ଅମୃତ, ପତି-ବିରକ୍ତି, ସନ୍ତାନ-ବିରକ୍ତି ନୁହେ ପତି ଏବଂ ସନ୍ତାନ ଅନୁରକ୍ତି ହିଁ ପୀୟୂଷ - ଏହି କଥାକୁ ସେ ପ୍ରସ୍ତୁତ ନାଟକଟିରେ ପ୍ରତିପାଦିତ କରିଛନ୍ତି। ସମାଲୋଚକମାନେ ମଧ୍ୟ ଏହି ନାଟକଟିକୁ ନାରୀର ଜୀବନ-ସଂଗ୍ରାମର ଏକ ସଫଳ ନାଟକ, ('ବନ୍ଦିତା' ଭଳି) ବୋଲି ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି।

ନାରୀ ଚରିତ୍ର ଚିତ୍ରଣ, ପଲ୍ଲୀର ଚିତ୍ର ଦେବାରେ ନାଟ୍ୟକାର ସଫଳତା ହାସଲ କରିପାରିଛନ୍ତି। ଭାରତୀୟ ନାରୀର ଆଦର୍ଶ ତା'ଙ୍କୁ ମୁଗ୍ଧ କରି ରଖିଥିବା ତାଙ୍କ ରଚିତ ନାଟକଗୁଡ଼ିକରୁ ସ୍ପଷ୍ଟ ହୋଇଯାଏ। ମଣିଷକୁ ଭଲ ପାଇବା ନାଟ୍ୟକାର ବଳରାମ ମିଶ୍ରଙ୍କର ନାଟ୍ୟ ସାହିତ୍ୟର ଅନ୍ତରର ବାଣୀ ବୋଲି ମନେ ହୁଏ। ନାଟ୍ୟକାର ଗୋପାଳ ଛୋଟରାୟଙ୍କ ଭଳି 'ଜୀବନ ପ୍ରତି ଗଭୀର ମମତା ଏବଂ ଅବିଚଳିତ ଆସ୍ଥା' ବଳରାମ ମିଶ୍ରଙ୍କ ସାହିତ୍ୟର ବିଶେଷତ୍ୱ।

'ବିଷଦୃଷ୍ଟି' ନାଟ୍ୟକାରଙ୍କର ଏକ ରହସ୍ୟଧର୍ମୀ ନାଟକ। ୧୯୬୧ ବେଳକୁ ନିଜ ଲେଖାରେ ନାଟକୀୟ ଉତ୍କଣ୍ଠା ଓ ସଙ୍ଘର୍ଷରେ ମଡ୍ରାଙ୍କାନ ଯଥା ସମ୍ଭବ ରକ୍ଷା କରିପାରୁଥିବା ଲେଖକ 'ବିଷଦୃଷ୍ଟିରେ ସାଧାରଣ ସଂଳାପ କେମିତି ବ୍ୟବହାର କଲେ, ଆଶ୍ଚର୍ଯ୍ୟ ଲାଗେ। ସଂଳାପ ବ୍ୟଂଜନାଧର୍ମୀ ନହେଲେ ନାଟକ ଉପଭୋଗ୍ୟ ହୋଇପାରେ ନାହିଁ, ଚରିତ୍ର ଠିକ ଫୁଟେ ନାହିଁ। ନାଟକଟିକୁ କେବଳ ରହସ୍ୟଧର୍ମୀ କରିବାର ଲକ୍ଷ୍ୟ ନେଇ ନାଟ୍ୟକାର ଏ ଦିଗଟିକୁ ବିଶେଷ ଦୃଷ୍ଟି ଦେଇପାରି ନଥିବା ମନେହୁଏ। ଏଣୁ ନାଟକଟିରେ ସଂଗତି ବେଳେ ବେଳେ ବାଧାପ୍ରାପ୍ତ ହୋଇଥିବା ଦୃଷ୍ଟିଗୋଚର ହୁଏ।

ନାଟକ ଏକ ଦୃଶ୍ୟକାବ୍ୟ। ମଞ୍ଚସଜ୍ଜା, ଆଲୋକ ସଂପାତ, ଘଟଣା ପ୍ରବାହକୁ ନେଇ ସେ ଜୀବନ୍ତ ହଏ। ଏଣୁ ଅନେକ ସଫଳ ନାଟକ ମଞ୍ଚଉପରେ ଯାହା, ପଢ଼ିବା ବେଳକୁ ତାହା ମନେ ନ ହେବା ସ୍ୱାଭାବିକ।

ତଥାପି 'ବନ୍ଦିତା', 'ଶଙ୍ଖ ମହୁରୀ', 'ବିଷ ପୀୟୂଷ' ପରି ଆହୁରି ଅନେକ ସୃଷ୍ଟି ଓଡ଼ିଶା ତାଙ୍କଠାରୁ ଆଶା କରିଥିଲା।

ସଂଳାପ ସଂରଚନା ଦିଗରୁ ବିଚାର କଲେ ଭଂଜକିଶୋରଙ୍କର ନାଟକ (ଜୟମାଲ୍ୟ, ମାଣିକଯୋଡ଼ି, ଜହର ଆଦିରେ ସଂଳାପ ସାହିତ୍ୟିକ ମୂଲ୍ୟବୋଧର, କାବ୍ୟିକ ରୂପମଣ୍ଡିତ ଗୌରବରେ ଗୌରବାନ୍ୱିତ। ବିଷୟବସ୍ତୁ ନିର୍ବାଚନ ଅନୁସାରେ ଭାଷା ବୋଧହୁଏ ଏମିତି ମହିମାମଣ୍ଡିତ ହୋଇଛି। ଭାବ ପ୍ରବଣ ଚରିତ୍ରଗୁଡ଼ିକ ମୁହଁ ଖୋଲିଲେ ହିଁ ଭାଷା ଏମିତି ହୋଇଯାଏ। ଉଚ୍ଚତର ଆଦର୍ଶ (ଜୟମାଲ୍ୟ) ବାସ୍ତବତାର ସଙ୍ଘର୍ଷରେ ଆସିଲେ ଏହାହିଁ ହୋଇଥାଏ ଭାବ ଜଗତରେ, ପ୍ରବଣତାର ସଂସାରରେ। ଅବଶ୍ୟ ବିଷାଦଗ୍ରସ୍ତ ହୋଇପଡ଼ିଲେ ଭାଷା ଚରିତ୍ରର ମୁହଁରେ ଏମିତି ଫୁଟିଥାଏ। ସମାଜର ବାସ୍ତବ ଜୀବନ-ଅଭିମୁଖୀ ଚରିତ୍ର ମୁହଁରେ ଏମିତି ଭାଷା ଆସିବ କୁଆଡୁ? ଏଣୁ ବୋଧହୁଏ ବଳରାମ ମିଶ୍ରଙ୍କର ଚରିତ୍ରଗୁଡ଼ିକର ମୁହଁର ଭାଷା ଏମିତି ଭାବରେ ଭିନ୍ନ ପ୍ରକାର ହୋଇ ଯାଇଛି। ଭଂଜକିଶୋରଙ୍କ ଉପରେ ବଙ୍ଗଳା ଭାଷାର ପ୍ରଭାବ ପଡ଼ିଥିବା ଲକ୍ଷ୍ୟ କରାଯାଏ। 'ତାରତ/ବଳିହାରି/ଓରେ ବାବା/ କି ଆପଦ୍' ଭଳି ଶବ୍ଦ ତାଙ୍କ ରଚନାରେ ଲକ୍ଷ୍ୟ କରାଯାଏ। ଆଉ ବଳରାମବାବୁଙ୍କ ରଚନାରେ 'ଆଏ କଂପାଉଣ୍ଡର ବାବୁ/ ଉଷ ଦିଅ ହେ/ ପୁଖରୀଆଡ଼େ/ ଜ୍ୟାସ୍ତା କରି ଖାଇ ଦେଲନା/ ସେତାକା' ଆଦି ତେଲଗୀ ପ୍ରଭାବ ଲକ୍ଷ୍ୟ କରାଯାଏ। ରାୟଗଡ଼ା ମାଟିରେ ତେଲୁଗୁ ଓ ଓଡ଼ିଆଙ୍କର ସହାବସ୍ଥାନରୁ ଯେଉଁ ମିଳିତ ସଂସ୍କୃତିର ସୃଷ୍ଟି ତାହାର ପ୍ରଭାବ, ସେଇଠାରୁ ଲୋକ-ମୁହଁର ଭାଷା 'ବନ୍ଦିତା'ରେ ରୂପାୟିତ ହୋଇଛି। ସେହି ଶବ୍ଦଗୁଡ଼ିକ ମଞ୍ଚରୁ ଜନତାଙ୍କ ପାଖରେ ପହଞ୍ଚିବାବେଳକୁ ଶୁଦ୍ଧ ହାସ୍ୟରସ ବି ସୃଷ୍ଟି କରେ, ଦର୍ଶକ ଉପଭୋଗ କରେ। ଏ ହାସ୍ୟ-ରସ ଗୋପାଳ ଛୋଟରାୟଙ୍କ ହାସ୍ୟରସଠାରୁ ଅଲଗା। ଗୋପାଳ ଛୋଟରାୟଙ୍କର କଳାତ୍ମକ ସଂଳାପ ବୁଦ୍ଧିଗତ - ଏଣୁ ବୌଦ୍ଧିକ।

ବଳରାମ ବାବୁଙ୍କର ସଂଳାପ ତାଙ୍କ ପୂର୍ବସୂରୀମାନଙ୍କ ଅପେକ୍ଷା ତାଙ୍କ ସମସାମୟିକ ଏବଂ ପରବର୍ତ୍ତୀ ନାଟ୍ୟକାର ମାନଙ୍କର ନିକଟବର୍ତ୍ତୀ। କବିଚନ୍ଦ୍ର କାଳିଚରଣଙ୍କର ତାଙ୍କର ପ୍ରଭାବକୁ ତଥାପି ସେ ଏଡ଼ାଇ ପାରିନାହାନ୍ତି। ମଞ୍ଚ - ଜୀବନ ସହିତ କାଳିବାବୁ ଯେମିତି ଜଡ଼ିତ ଥିଲେ, ମଞ୍ଚ ଧାରାର ଉଦ୍‌ଗାତା ହିସାବରେ ସେ ସମସାମୟିକ ଏବଂ ପରବର୍ତ୍ତୀ ସ୍ରଷ୍ଟାଙ୍କୁ ଯେ ପ୍ରଭାବିତ କରିବା ସ୍ୱାଭାବିକ। ସେ ଥିଲେ ଅନନ୍ୟ ପ୍ରତିଭାଧାରୀ। ଜୟପୁରର ସଫଳ ମଞ୍ଚ ଓ ବେତାର ଶିଳ୍ପୀ ଶ୍ରୀଇଶୋଦର ମିଶ୍ର କହନ୍ତି, "ବଳରାମ ବାବୁ କାଳିବାବୁଙ୍କ ପ୍ରଭାବ, କାଳିବାବୁଙ୍କ ଆଶୀର୍ବାଦର ଏକ ରୂପ।" ଅତୀତର ପରମ୍ପରା, ସାମ୍ପ୍ରତିକ ସମୟର ଆଶା, ରୁଚି ଏବଂ ଭବିଷ୍ୟତର ସ୍ୱପ୍ନର ଏକ ସମ୍ମିଳିତ ରୂପର ରୂପକାର ଥିଲେ ଅକାଳରେ ଝରିଯିବା, ବହୁ ଅପ୍ରକାଶିତ ଲେଖା ଛାଡ଼ି ଯାଇଥିବା ଏହି ପ୍ରତିଭା ବଳରାମ ମିଶ୍ର।

ନମ୍ରତାର ସହିତ ସ୍ୱୀକାର କରୁଛି, ତାଙ୍କ ସମ୍ପର୍କରେ ଏ ଲେଖା ଏକ ସାମାନ୍ୟ ଉଦ୍ୟମ ମାତ୍ର।

**ଋଣସ୍ୱୀକାର :** ୧) ଓଡ଼ିଆନାଟ୍ୟ ସାହିତ୍ୟର ବିକାଶଧାରା ଡଃ ହେମନ୍ତ କୁମାର ଦାସ

**● ନଳିନୀ ରଞ୍ଜନ ମିଶ୍ର, ମାଦଳା ସାହି, ଜୟପୁର।**

## କୋରାପୁଟ ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥାର ୧୯୯୩-୯୪ ମସିହାର ଆର୍ଥିକ ବର୍ଷରେ (ନଭେମ୍ବର ମାସ) ସୁଦ୍ଧା ବିଭିନ୍ନ ଉନ୍ନୟନ ମୂଳକ କାର୍ଯ୍ୟ ସଂପର୍କେ।

| | | |
|---|---|---|
| ୧ - କାଜୁ ବାଦାମ ଚାଷ | ୧୦୦୦ ହେକ୍ଟର | ଟ. ୧୩,୫୦,୦୦୦/- |
| ୨ - ଜଳ ଅମଳ ପ୍ରକଳ୍ପ | ୪୩ ଗୋଟି ହିତାଧିକାରୀ<br>୧୨୮୫ ଜଣ ଆଦିବାସୀ | ଟ. ୬୨,୩୫,୦୫୩/- |
| ୩ - ପନି ପରିବା ଚାଷ | ହିତାଧିକାରୀ - ୨୫୦୦<br>ଏକର - ୬୨୫-୦୦ | ଟ. ୬,୨୫,୦୦୦/- |
| ୪ - ମାଣ୍ଡିଆ ଓ କାନ୍ଦୁଲ ଚାଷ<br>(Intercropping) | ୨୭୦ ଗୋଟି ପ୍ରଦର୍ଶନି<br>ଏକର-୧୬୭-୪୦ | ଟ. ୧,୩୫,୦୦୦/- |
| ୫ - ମୁର୍ଗୀ ଦଉଡ଼ି ତିଆରି | ୧୨୦ ଜଣ<br>ସ୍ତ୍ରୀ ହିତାଦିକାରୀ | ଟ. ୧,୫୬,୦୦୦/- |
| ୬ - ସ୍ୱେଚ୍ଛାସେବି ସଂଗଠନ ଦ୍ୱାରା ଗଛ ଲଗାଣ | ଏକର ୫୯୬-୦୦ | ଟ. ୩,୨୧,୮୪୦/- |

ଉପରୋକ୍ତ ଉନ୍ନୟନ ମୂଳକ କାର୍ଯ୍ୟ ବ୍ୟତୀତ ଏହି ସଂସ୍ଥା ମହୁଚାଷ, ଆଦିବାସୀ ଛାତ୍ରମାନଙ୍କ ପାଇଁ ଛାତ୍ରାବାସ ନିର୍ମାଣ, ରାସ୍ତା ନିର୍ମାଣ, ଓ ନଳକୂପ ଖନନ ଇତ୍ୟାଦି ବିଭିନ୍ନ ପ୍ରକାର ଉନ୍ନୟନ ମୂଳକ କାର୍ଯ୍ୟ କରି ଆଦିବାସୀ ତଥା ଆଦିବାସୀ ବସ୍ତିର ନାନାବିଧ କାର୍ଯ୍ୟ କରି ଆସୁଅଛି।

ଶ୍ରୀ ପ୍ରମୋଦ କୁମାର କର,
ଓ.ପ୍ର.ସେ(୧)
ଯୋଜନା ପ୍ରଶାସକ,
ସମନ୍ୱୀତ ଆଦିବାସୀ ଉନ୍ନୟନ ସଂସ୍ଥା, କୋରାପୁଟ।

ଶ୍ରୀ ଜଗଦୀଶ ପ୍ରସାଦ ଦାଶ,
ଆଇ.ଏ.ଏସ୍,
ଜିଲ୍ଲାପାଳ ତଥା ଅଧ୍ୟକ୍ଷ,
ସମନ୍ୱୀତ ଆଦିବାସୀ ଉନ୍ନୟନ ସଂସ୍ଥା, କୋରାପୁଟ।

ଅଭ୍ୟର୍ଥନା ସମିତି ତରଫରୁ **ଶ୍ରୀ ଲମ୍ବୋଦର ମିଶ୍ରଙ୍କ** ଦ୍ୱାରା ପ୍ରକାଶିତ
ଓ
ଜୟପୁର ପରଫେକ୍ଟ ଅଫସେଟ୍ ପ୍ରିଣ୍ଟର୍ସରେ ମୁଦ୍ରିତ।

# ଆପଣଙ୍କ ଓ ଆପଣଙ୍କ ପୁରପଲ୍ଲୀର ଶ୍ରୀବୃଦ୍ଧି ପାଇଁ କୋରାପୁଟ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା

ସରକାରଙ୍କ ଅର୍ଥନୈତିକ ଆଭିମୁଖ୍ୟ ଓ ବିକାଶଶୀଳ କାର୍ଯ୍ୟକ୍ରମଗୁଡ଼ିକ କୋରାପୁଟ, ଜିଲ୍ଲାର ପୁରପଲ୍ଲୀରେ ସଫଳ ଭାବେ ରୂପାୟନ କରିବା ଓ ଦାରିଦ୍ର୍ୟ ଦୂରୀକରଣ ଯୋଜନାଗୁଡ଼ିକର ନିର୍ଦ୍ଧାରିତ ଲକ୍ଷ୍ୟ ହାସଲ କରିବାର ଉଦ୍ଦେଶ୍ୟ ନେଇ କୋରାପୁଟ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଶତତ ଚେଷ୍ଟିତ ଏବଂ ପ୍ରଗତିର ନନ୍ଦିଘୋଷକୁ ଆଗକୁ ଟାଣିନେବାକୁ ବଦ୍ଧପରିକର ।

**କାର୍ଯ୍ୟକ୍ରମ**

- ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନା
- ଜବାହାର ରୋଜଗାର ଯୋଜନା
- ଇନ୍ଦିରା ଆବାସ ବାସଗୃହ ଯୋଜନା
- ନିଯୁତ କୂପ ଯୋଜନା
- ଗୋବର ଗ୍ୟାସ ପ୍ଲାଣ୍ଟ
- ପମ୍ପସେଟ୍
- ଟ୍ରାଇଜେମ୍ (TRYSEM)

**ଜଗଦୀଶ ପ୍ରସାଦ ଦାଶ**
ଜିଲ୍ଲାପାଳ - ତଥା - ଅଧ୍ୟକ୍ଷ
ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା
କୋରାପୁଟ